# ବିଷର ବଳୟ

( ଗଳ୍ପ ସଂକଳନ )

ପ୍ରିୟନାଥ ମହାପାତ୍ର, ଆଡ୍‌ଭୋକେଟ୍
ଚଣ୍ଡୀଖୋଲ, କଟକ

ପ୍ରକାଶକ :
'ବଟୀଘର'
ଚଣ୍ଡୀଖୋଲ ଛକ, ଧାନମଣ୍ଡଳ
କଟକ

ପ୍ରକାଶ କାଳ : ୧୯୯୧

ମୁଦ୍ରଣ : ବଟୀଘର ପ୍ରେସ୍

ମୂଲ୍ୟ : ଅଠରଟଙ୍କା ମାତ୍ର

BISARA BALAYA

By :
Priyanath Mohapatra
Chandikhol, Cuttack.

Published by :
'BATIGHAR'
Chandikhol Chhak
Dhanmandal, Cuttack.

First Edition : 1991

Prited at :
Batighar Press
Chandikhol

Price :
Rupees Eighteen Only

# ଏଥିରେ ଅଛି





## ଏଇ ଲେଖକଙ୍କର—

ନାରୀର ମନକଥା, ପରାସ୍ତ ଖେଳାଳୀ, ପାପ ପଞ୍ଜୁରିରେ ଶାସ୍ତି, ସାମ୍ବାଦିକ ଓ ସମ୍ବାଦପତ୍ର, ଆମେ ଓଡ଼ିଆ ଆମ ଓଡ଼ିଶା, କୋହିନୂର ହୀରା, ପଞ୍ଚତନ୍ତ୍ର କାହାଣୀ, ଲୁହଲହୁର ଧରିତ୍ରୀ, ଆମରି କଥା, ଏଇ ଭାରତରେ, ନଦୀର ଜନ୍ମକଥା, ଓଡ଼ିଶାର କିମ୍ବଦନ୍ତୀ, ଓଡ଼ିଶାରେ ବାପୁଜୀ ଏବଂ ଭୂମିପୁତ୍ର ।

# ଦିନେ ସନ୍ଧ୍ୟାରେ...

ସେଦିନ ଦୂର ନୀଳ ପାହାଡ଼ର ଧୂସୂରିଆ କୋଣରେ ଆତ୍ମଗୋପନ କଲେ ଦିନକର ଦିନମଣି । ଧୂଳିର ଧରଣୀରେ ପାଦଦେଲେ ଅଭିସାରିକା ସୁସନ୍ଧ୍ୟା । ଆକାଶରେ ଫୁଟିଲେଇ ଅଭିଆଡି ତାରାଗୁଡ଼ିକ ମିଟି ମିଟି କଲେଣି କ୍ଷୀଣକଟି ଦୋହଲାଇ ଟେଙ୍ଗା ଘରର କୁଳବଧୂ ସଞ୍ଜ ତେଲ ମୂଳେ ସଞ୍ଜ-ସଳିତା ଜାଳିଲେଣି । ସେତିକିବେଳେ ଝିପିଝିପି ବର୍ଷା ହେଉଥାଏ । ବରଗଡ଼ର ଖାଲୁଆ ରାସ୍ତା ମାନଙ୍କରେ ଆଣ୍ଠୁଏ ଲେଖାଏଁ ପାଣି ଜମି ଯାଇଥାଏ ।

ଆମର ସରକାରୀ କ୍ୱାଟର ନିକଟସ୍ଥ କାରଖାନାର ସାଇରନ ସ୍ୱର ମୋତେ ଏକ ପ୍ରକାର ଅକଓ୍ୱାର୍ଡ଼ ପୋଜିସନରେ ପକାଇ ଦେଇଥାଏ ।

ବର୍ଷା ଟିକିଏ ଛାଡ଼ିଥିଲେ ହୁଏତ ଟିକେ ବଜାର ପରିକ୍ରମା କରି ମନ ଫୁର୍ତ୍ତି କରିଥାନ୍ତି । ନା' ତା' ବି ହବନି, ଆଜି ଘର ଜଗିବା ପାଳି ମୋର ।

ଖରଟା ବେଳଠାରୁ ଭାଇ ଭାଉଜ କ'ଣ ଗୋଟାଏ ପାର୍ଟି ଆଟେଣ୍ଡ କରିବାକୁ ଯାଇଛନ୍ତି ଯେ, ଏଯାଏଁ ଆସିବାକୁ ନାହାନ୍ତି । ଆଜି ନୁହେଁ ପିଲା-ବେଳୁ ଏଇ ଭାଇ ଭାଉଜଙ୍କ ପାଖରେ ବାପା ଛାଡ଼ିଦେଇ ଯାଇଛନ୍ତି, କ'ଣ ନା ମୁଁ ପାଠପଢ଼ିବି । ଆଉ ଭାଇ ଭାଉଜ ଯଦି କେଉଁଠିକୁ ଫିଲମ ଦେଖି ବା ପାର୍ଟି ଆଟେଣ୍ଡ କରିବାକୁ ଯିବେ, ମୁଁ ଅନୁଜ ଦ୍ୱାର ଜଗିବି । ଆଉ ଛୋଟିଆ ଝିଅଟି କାନ୍ଦିଲେ ସମ୍ଭାଳିବି ଫେରିବା ପର୍ଯ୍ୟନ୍ତ ।

ଲୋଡ଼ସେଇଯା ନାହିଁ ଛୁଟିନେଇ ଘରକୁ ଯାଇଛନ୍ତି । ସରକାରୀ କ୍ୱାର୍ଟରରେ ମୋତେ ଏକୁଟିଆ ଖାଁ ଖାଁ ଲାଗୁଥାଏ, ପକ୍ଷହୀନ ଶୁଆଟିଏ ପରି ସତେ ଯେପରି ପଞ୍ଜୁରୀର ବନ୍ଧନ ଫିଟାଇ କୁଆଡ଼େ ଯାଇ ପାରିବିନି । ଆଖି-ବୁଜି ଚାଦରଟା ଘୋଡ଼େଇ ହୋଇ ଶୋଇଲି ।

ନା ନିଦ ହେଉନି ।

ଦୁଇଦିନ ପୂର୍ବରୁ କୃତିତ୍ୱର ସହିତ ବି. ଏ. ପାଶ୍ କରିଥିଲେ ମଧ୍ୟ ଭବିଷ୍ୟତକୁ ଚିନ୍ତାକରି କିଛି ସମୟ ନିଜକୁ ଭାବନା ରାଜ୍ୟରୁ ଫେରାଇ ଆଣିବାର ଅପଚେଷ୍ଟା କରୁଥିଲି ।

ସନ୍ଧ୍ୟା ଆଳତିର ଘନ ଘନ ଘଣ୍ଟି ଧ୍ୱନିରେ ପ୍ରକମ୍ପିତ ହେଉଥିଲି । ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣତି ଢାଳିଲି । ହଠାତ୍ କଲିଂ ବେଲ୍ଟା ଝିଂ ଝିଂ ହୋଇ ଗର୍ଜନ କଲା ।

ପୋଷା ଆଲସେସିଏନ କୁକୁରଟା ଭୁକି ଉଠିଲା । ମୋ ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଭାଇଭାଉଜ ଆସିଗଲେ ବୋଧହୁଏ । କିନ୍ତୁ ଜିପ୍ର ଶବ୍ଦ ତ ଶୁଭୁନି । ଚାଦରଟା ଖଟ ଉପରେ ଫୋପାଡ଼ି ଦେଇ ଦରଜା ଖୋଲିଲି ।

ଶାନ୍ତି ! ତମେ ?

ଦରଭଙ୍ଗା ଶାଢ଼ୀ ପିନ୍ଧି ଦରଜା ପାଖରେ ଛିଡ଼ା ହୋଇଥିଲା ଶାନ୍ତି । ହାତରେ ଭ୍ୟାନିଟି ବ୍ୟାଗ ଆଉ ମୁହଁରେ ବେଜାଏ ଖିଲଖିଲ ହସ ନେଇ, ସୁଦୂର ସମ୍ବଲପୁରରୁ ସେ ଆସିଥିଲା । ମୁଁ ଅବାକ୍ ହୋଇ ଚାହିଁ ରହିଲି; ସେ ମୋ ଆଡ଼କୁ ଟିକେ ଚାହିଁଦେଇ ଘର ମଧ୍ୟକୁ ପଶିଆସି କାହାକୁ ଖୋଜିବା ଆଖିରେ ଚାହିଁ ପଚାରିଲା ।

ଭାଉଜ ?

ବସରେ ଆସିଲି, ବାଟରେ ବସ୍ ଚକା ଫାଟିଲା ଯେ ୨ ଘଣ୍ଟା ଡେରି ହେଲା—ପୁଣି ବର୍ଷା, ଝଡ଼·····ମୋ ଠାରୁ ଉତ୍ତର ପାଇବା ପୂର୍ବରୁ ସେ ବାଥ୍ରୁମକୁ ଚାଲିଗଲା ।

ମୁଁ ଥକ୍କା ମାରି ବସିଗଲି ।

ଦୀର୍ଘଦିନ ପରେ ଆଜି ତାକୁ ଦେଖିବାକୁ ପାଇଲି କେତେ ବଡ଼ ହୋଇଯାଇଛି ସତେ !

ହଜିଲା ଅତୀତର ଅଦେଖା କ୍ଷତ ଯେ, କେବେ ବି ମନେପକାଏ ନାହିଁ, କିନ୍ତୁ ଆଜି ହଠାତ୍ ତାର ଅପ୍ରତ୍ୟାଶିତ ଆଗମନ ସେ ପୁରୁଣା କ୍ଷତରେ ଆଘାତ ଦେଲା ।

ଆଜକୁ ଚୌଦବର୍ଷ ତଳର କଥା । ମୁଁ ମାଟ୍ରିକ ପରୀକ୍ଷା ଦେଇ ସାରିଥାଏ । ଭାଉଜଙ୍କର ଜଣେ ସମ୍ପର୍କୀୟା ବନ୍ଧୁଙ୍କ ଝିଅ ବାହାଘରେ ଯୋଗଦେବାପାଇଁ ଭାଇଭାଉଜଙ୍କୁ ସ୍ୱତନ୍ତ୍ର ଭାବରେ ନିମନ୍ତ୍ରଣ ହୋଇଥିଲା ।

ଆଉ ମୁଁ —

ନିମନ୍ତ୍ରିତ ହୋଇ ନ ଥିଲେ ମଧ୍ୟ ଘରେ ରହି ଗଣ୍ଡଗୋଳ, ମାଡ଼ପିଟ କରି ଭାଇଙ୍କୁ ବଦନାମ କରିଦେବା ଭୟରେ ଭାଉଜ ମୋତେ ସାଙ୍ଗରେ ନେଇ ଯାଇଥିଲେ ।

ବାହାଘରର ଧୂମଧାମରେ ମୁଁ ଶୋଇ ଯାଇଥିଲି ।

ଭାଇ ! ଭାଇ !! ଉଠନ୍ତୁ, ମା' ଡ଼ାକୁଛନ୍ତି, ଖାଇବ ଚାଲ । କାହାର ସରଳ ଡାକରେ ମୋର ନିଦ ଭାଙ୍ଗିଗଲା । ସେହିଦିନ ତା' ସହିତ ମୋର ପ୍ରଥମ ସାକ୍ଷାତ, ସେ କହିଲା—ତା' ନାଁ ଶାନ୍ତି ଆଉ ଦଶମ ଶ୍ରେଣୀର ଛାତ୍ରୀ ।

ଶାଲୁଆର ପଞ୍ଜାବୀ ପିନ୍ଧା ନବଯୌବନା ଷୋଳ ବର୍ଷୀୟା ଶାନ୍ତିର ରୂପଲାବଣ୍ୟ ସନ୍ଧ୍ୟା ଦୀପ ମାନଙ୍କଠାରୁ ବେଶ ଉଜ୍ଜଳ ଦିଶୁଥିଲା । ପାଖରେ ବସାଇ ଘର କଥା ପଚାରିଲି । ତା' ପରେ ଆସି ଖାଇଲି । ପରଦିନ ସେ ମୋ ହାତଧରି ତାଙ୍କ ବଗିଚା, ଚାଷଜମି, ଧାନଖଳା, ଆମ୍ବତୋଟା, ଘର ଯାହା ଯେଉଁଠି ଥିଲା ବୁଲାଇ ଦେଖାଇ ଆଣିଲା । ନଈ ଘାଟରେ ବସାଇ କେତେ ମଜା ମଜା ଗପ କହିଲା । ସେ ଗୀତ ବୋଲେ ମୁଁ ଗୁଣୁ ଗୁଣୁ ହୋଇ ତାରେ ନାରେ କରେ, ତା' ସଙ୍ଗୀତ ମୂର୍ଚ୍ଛନାରେ ମୋ ହୃଦୟରେ ନୂତନ ଉନ୍ମାଦନା ସୃଷ୍ଟି ହୁଏ । ମୁଁ କହେ ଶାନ୍ତି ତମେ ଯେମିତି ସୁନ୍ଦର ତମ ଗୀତଗୁଡ଼ିକ ସେହିପରି ମଧୁର । ସେ କିଛି କୁହେନା ମୁରୁକି ମୁରୁକି ହସେ, ତା ସହିତ ମୋର ସମ୍ପର୍କ ନିବିଡ ହୋଇଆସିଲା, ମାତ୍ର କେତୋଟି ଦିନରେ ।

ମୋର ଠିକ ମନେ ଅଛି, ତା'ର ଦୁଇଦିନ ପରେ ଶିବରାତ୍ରୀ ଦିନ ତମାମ ଉପବାସ ରହି ତା'ପର ଅନେକ ଝିଅ ସେହି ଗାଁର ଶିବ ମନ୍ଦିରରେ ରାତି ଉଜାଗର ରହି ଜାଗର ଜାଳିଲେ । ମୁଁ ବି ଯାଇଥିଲି, ବାଇଗଣି ରଙ୍ଗର ମଠା ଶାଢ଼ୀଟିଏ ପିନ୍ଧି ଆଣ୍ଠୁମାଡ଼ି ଦେଉଳ ସାମ୍ନାରେ ବସିଥିଲା ଶାରୀ । ଏକ ନିର୍ଜୀବ ପ୍ରତିମା ଭଳି, ସେଦିନ ପ୍ରଥମ କରି ଶାଢ଼ୀ ପିନ୍ଧିଥିଲା ଶାରୀ । ଚିକ୍‌କଣ ଶାଢ଼ୀଟି ବିକ୍ଷିପ୍ତ କବରୀ ଭିତରୁ ତା'ର ତୋଫା ଗୋରା ସୁଗୋଲ ମୁହଁଟି ଠିକ ମେଘାଚ୍ଛନ୍ନ ପୂର୍ଣ୍ଣିମା ରାତିରେ ଚନ୍ଦ୍ର ଉଇଁଲାଭଳି ଦେଖାଯାଉଥାଏ । ନୀଳ କଇଁର ଆଖି ଦୁଇଟି ସ୍ଥିର ହୋଇ ଚାହିଁ ରହିଥାଏ ଘାସ ଚନ୍ଦୁଆ ଆଡ଼େ ସତେଯେମିତି କିଛି ଅଲୌକିକ ପଦାର୍ଥର ସନ୍ଧାନ ପାଉଛି ସେଇ ଚନ୍ଦୁଆ ଭିତରେ ଆଉ ସୃଷ୍ଟିର ଶେଷ ପର୍ଯ୍ୟନ୍ତ, ସେ ଯେମିତି ଚାହିଁ ରହିବ । ମତେ ଦେଖିଲା ଶାରୀ, ସେଠାରୁ ଉଠିଆସି ହସିଦେଲା । ମୁଁ ପଚାରିଲି ଶାରୀ ଏ ଉଜାଗର କାହାପାଇଁ ? ସେ ଉତ୍ତର ନ ଦେଇ ନୀରବ ରହିଲା—ବୋଧହୁଏ ଭବିଷ୍ୟତରେ ଭଲ ମନଲାଖି ବରଟିଏ ପାଇଁ ନୁହେଁ ? ସେ ଲାଜେଇ ଗଲା ।

ସେଇଦିନ ଭାଇ ଭାଉଜ ଓ ମୁଁ ତାଙ୍କ ଘରୁ ବିଦାୟ ନେଇ ଜିପ୍‌ରେ ଫେରିଲୁ ; ସେତେବେଳେ ମୁଁ ଖୋଜୁଥିଲି । କାହିଁ ? ଶାରୀ କାହିଁ ? ମୋତେ ଟିକିଏ ବିଦାୟ ଦେବାକୁ ଆସିଲାନି ଆଗରୁ ଫୁଲେଇ ହେଉଥିଲି !

କୋଠା ଛାତ ଉପରୁ ଲକ୍ଷ କଲି; ଏ ଯେ ଶାରୀ ! ନୀଳ ରଙ୍ଗର ଶାଢ଼ୀ ପିନ୍ଧିଥିଲା, ଆଉ ବାଦାମବାଡ଼ିର ସୁଲୁ ସୁଲୁ ପବନରେ ତା' ଶାଢ଼ୀ କାନି ଫଡ଼ ଫଡ଼ ହୋଇ ସତେଯେପରି ମୋତେ ଦୁଃଖଦ ବିଦାୟ ଦେଉଥିଲା, ସେ ମୋତେ ଏକା ଆଖିରେ ଚାହିଁଥିଲା । ତା' ଆଖିରୁ ଶ୍ରାବଣୀ ଝରୁଥିଲା । ମୋ ମନରେ ପ୍ରତିଧ୍ୱନିତ ହେଉଥିଲା ସେହି କଥା ପଦକ 'ଭାଇ ଶାରୀକୁ ଭୁଲିବ ନାହିଁ, ଚିଠି ଦେବ ।'

ଶାରୀ ନନ୍ଦଙ୍କୁ ୪, ୪ ଥର ଚିଠି ଦେବ ବୋଲି ଲେଖୁଥାଏ । ମନ କହେ ଚିଠି ଦେବାକୁ ତ ବିବେକ ବାଧାଦିଏ । ଶେଷରେ ଚିଠି ଚିରାହୁଏ ବିବେକର ଜୟ ହୁଏ ।

ଦିନେ ଜିଦ୍ ଧରି ଚିଠିଟିଏ ଲେଖିଲି ।

' ପ୍ରିୟତମା ଶାରୀ,

ମୁଁ ତୁମକୁ ଭୁଲି ପାରିବିନି । ତୁମର ମୋର ସମ୍ପର୍କ ଚିରଦିନ ରହିବ । ଭଗବାନ କରନ୍ତୁ ଆମ ଦୁହିଁଙ୍କର···ହିଁ, ନାହିଁ; କମା, ପୂର୍ଣ୍ଣଚ୍ଛେଦ ଏହିପରି ଅନେକ କିଛି ଲେଖି ପୋଷ୍ଟ ଅଫିସରେ ଲଫାପା ମିଳିଲାନି । ବହି ଭିତରେ ଚିଠିଟି ରଖି କଲେଜ ଚାଲିଗଲି ।

କ'ଣ ଗୋଟାଏ ଖୋଜୁ ଖୋଜୁ ଭାଉଜ ମୋ ପଢ଼ାଘରର ବହି ଖେଲାଇ ଏହି ଅମୂଲ୍ୟ ଚିଠିଖଣ୍ଡିକ ଉଦ୍ଧାରକରି କୋପମୂର୍ତ୍ତି ଧାରଣ କରିଛନ୍ତି ସତେ ଯେପରି କାଳୀ କରାଳୀ ନରମୁଣ୍ଡ ମାଳ ମୁଁ ବାସେଲି······।

ଘରକୁ ଫେରିବା ମାତ୍ରେ ଭାଉଜଙ୍କ ଭାଗବତ ଆରମ୍ଭ ହେଲା । ବାବୁ ପ୍ରେମଚିଠି ଲେଖୁଛନ୍ତି, ପ୍ରେମ କରୁଛନ୍ତି । ପାଠ ଡ଼ୋରେଡ ମହାକ୍ଷାମା କାଗଜ ମତେ ଥାର୍ଡ଼କ୍ଲାସ- ପୁଣି ପ୍ରେମ ଛି, ଛି, ଘରେ ବଦମାସ ହେଲ ଏ ଚିଠିଟି ରଖିଲ, ଭାଇଙ୍କ ମାନ ଇଜ୍ଜତ ବରବାଦ୍ କଲ, ପୁଣି ପ୍ରେମ ଚିଠି, କେଉଁଠି ମାଡ଼ିଟିଂ, ହ୍ବାଇକ ମୁଣ୍ଡଫଟା, ଛି, ଛି, ଆଜି ଭାଇ ଆସନ୍ତୁ ତମର ଦିନେ ତ ମୋର ଦିନେ । ଏ ଘରେ ତୁମେ ରୁହ ନହେଲେ ମୁଁ ରହେ । ଆହୁରି ଅନେକ କିଛି । ଭାଇ ଅଫିସରୁ ଆସିଲା ପରେ ଭାଉଜଙ୍କ କଡା ସୁପାରିଶ୍ ହମେ ବେଶ ଉତ୍ତମ ମଧ୍ୟମ ହୋଇଥିଲା ମୋ ଉପରେ ।

ଓଦାଶାଢ଼ୀ ବଦଳାଇ ବାଥ୍ ରୁମରୁ ଫେରି ଆସୁଥିଲା ଶାରୀ, କ'ଣ ଭାଇ ଚିନ୍ତା କରୁଛ ? କଥା କହୁନ ଯେ, ଘରି ଥଣ୍ଡା ହେଉଛି, କ'ଣ ଚା, ନା କଫି । ମୁଁ କିଛି ଉତ୍ତର ଦେବା ପୂର୍ବରୁ ଆଦର୍ଶ ଗୃହିଣୀ ପରି ରୋଷେଇ ଘରକୁ ଚାଲିଗଲା । ( ବୋଧହୁଏ କଫି ତିଆରି ପାଇଁ )

ଦୁଆରେ ଜପ୍‌ର ଢଁ ଢଁ ଶବ୍ଦ ଶୁଭିଲା । ମୋ ଗୁଡିରୁ ଆତଡ଼ା ଖସିଲା । ଇଲେ ମାଲେ ଶାଶ୍ୱ କାହିଁକି ଆସିଲା ? ମୁଁ ତ ତା ପାଖକୁ ଚିଠି ଦେଇନ । ଥରେ ଚିଠି ଲେଖିଥିଲି ବୋଲି ଯେଉଁ ମାଡ଼··· । ପୁଣି ଆଜି— ଶାଶ୍ୱ ନିଜେ ପୁଣି ସନ୍ଧ୍ୟାରେ··· ହେ ଭଗବାନ··· । ଗୁଦରିଟା ଟାଣି ଆଣି ଘୋଡ଼ାଇ ହୋଇ [ଡେଇଁ] ଶୋଇ ପଡ଼ିଲି ।

ଗାଡ଼ି ଘଣ୍ଟି ଶୁଣି ଦୁଇ କପ୍ କଫି ଧରି ଦରଜା ନିକଟକୁ ଆସିଯାଇ ଥିଲି ଶାଶ୍ୱ । ଭାଉଜ ଘର ଭିତରକୁ ପଶି ଆସୁ ଆସୁ ଶାଶ୍ୱକୁ ଦେଖି କୁଣ୍ଢାଇ ପକାଇଲେ । କାଲେ ଶାଶ୍ୱ ତୁ କେତେବେଳେ ପହଞ୍ଚିଲୁ ?

ଏଇ ଅଳ୍ପ ସମୟ ହେଲା ଭାଉଜ । ଭାଇ ଭାଉଜଙ୍କୁ ବୋଧେ ପ୍ରଣାମ କଲା ଶାଶ୍ୱ । ଭାଇ ତାକୁ କ'ଣ ପଚାରିବା ପୂର୍ବରୁ ଭାଉଜ ମୋ ବେଡ଼ରୁମ୍‌କୁ ପଶି ଆସିଲେ ଓ ଦେହରୁ ଚଦରିଟା କାଢ଼ିଦେଲେ । 'ତମେ କମିତିକା ପିଲା ମ' ଘରେ ଝିଅଟା ମୋର କେତେବେଳୁ- ···

ମୁଁ ଆଖି ମଳମଳ ଉଠିଲି ।

ଉଁ କିଏ ଶାଶ୍ୱ ? ସେ ଆସିଛି, ଆସୁ ମୋର କ'ଣ ଗଲା ? ଭାଉଜ ମୋ ପାଟିକୁ ଘୃପିଧରି କହିଲେ, ତୁମେ ପାଟି କରନା, ଶାଶ୍ୱ ଶୁଣିବ । ତମର ଏମିତିକା କଥା ଶୁଣିଲେ ସେ କ'ଣ ଭାବିବ ଏ ବଂଶର ଭବିଷ୍ୟତ କୂଳବଧୂ ପ୍ରଥମଥର କ'ଣ ଏଇ ସମ୍ମାନ ନେଇ ଫେରିବ ?

ମୋ କଥା ଛଡ଼େଇ ନେଇ ଭାଉଜ କହିଲେ······

ସବୁ କଥାର ଗୋଟାଏ ସମୟ ଅଛି । ସେ ସମୟ ଉପସ୍ଥିତ ହେଲେ ତାହା ଆପେ ଆପେ କାର୍ଯ୍ୟରେ ପରିଣତ ହୁଏ । ମୁଁ ତୁମର ଭାଉଜ, ତୁମର ଭଲ ମନ୍ଦ ଦାୟିତ୍ୱ ମୋ ଉପରେ । ୪ବର୍ଷ ତଳେ ତମ ପ୍ରେମ ଚିଠି ମୁଁ ଦେଖିଥିଲି ଶାଶ୍ୱ ଭଲ ଝିଅ ସେହିଦିନୁ ତାକୁ ଆମ ଘରକୁ ବୋହୂ କରି ଆଣିବାପାଇଁ ମନେ ମନେ ସ୍ଥିର କରିଥିଲି । ଏବେ ସମୟ ଆସିଛି । ବାପା ମା' ସମସ୍ତଙ୍କୁ ଆଗରୁ ଏ ସମ୍ପର୍କରେ କହିଛି, ସମସ୍ତେ ସମ୍ମତି ପ୍ରଦାନ କରିଛନ୍ତି । ସେଥିପାଇଁ ତାକୁ ଡ଼କାଇଆଣିଛି ଏଠାକୁ । ଜ୍ୟୋତିଷେ ଦିନ୍ଧିତ ନିର୍ଦ୍ଦେଶ କରିଛନ୍ତି । ଆସନ୍ତା ମାସରେ ତମର ଶାଶ୍ୱ ସହିତ··· ।

ମୁଁ ମୋ ଭାଉଜଙ୍କୁ ସେଦ୍ଧାବନ ଚାହିଁଲି ।

ଦେଖିଲି ତାଙ୍କ ଦୁଇ ଆଖିରୁ ଦୁଇଧାର ଲୁହ, ଶବୁକ ଭେଦକରି ଆସେଇ ଆସୁଛି । ତାକୁ ଲୁଚେଇବାକୁ ଚେଷ୍ଟା କରୁଥିଲେ ଶାଶୀ କର୍ଣ୍ଣ ଧରି ଘର ଭିତରକୁ ପଶିଆସୁଥିଲା ।

( ବୋଧହୁଏ ଏ କଥୋପକଥନ ସେ ଶୁଣୁଥିଲା )

କହିଲେ ଶାଶୀ, ତମ ଲୋକପାଇଁ ଆଉ କପେ କଫି ଆଣ । ସେ ଲାଜେଇଗଲା, ମୋତେ କଟେଇ କଟେଇ ଚାହିଁ ଚାଲିଗଲା । ପଡଶା ଘରର ଛୋଟ ଛୋଟ ପିଲାଙ୍କର ସ୍ୱର ଶୁଭିଲା—

ଓଁ ଜ୍ୟୋତି ପରମ ବ୍ରହ୍ମ

ଓଁ ଜ୍ୟୋତି ଜନାର୍ଦ୍ଦନ

ଓଁ ଜ୍ୟୋତି·········



# ବନ ତୁଳସୀ

ଲଣ୍ଡାମୁଣ୍ଡିଆ ସୂରଜଟା ସେଦିନ ଠିକ୍ ପୃଥିବୀ ମଝିରେ ଛିଡ଼ା ହୋଇଥାଏ। ଯେମିତିକି ତା' ତେଜ, ରୂପ କୋପରୁ କୌଣସି ଜଳରାଣୀ କୁଆଡ଼େ ଯାଇପାରିବେନି। ସେ ସବୁ ଜଳରାଣୀଙ୍କୁ ଗୋଟିକ ପରେ ଗୋଟିଏ ପାଶବିକ ଅତ୍ୟାଚାର କରି ନିଜ ଦେହକୁ ଟାଣିନେବ।

ସେତିକିବେଳେ କାମସାରି ନିଧୁମ ଖରାରେ ଫେରୁଥିଲା ଚଇତା।

ହେ ଚଇତା! କୁଆଡ଼େ ଯାଉଛୁକି? ଟିକେ ଛିଡ଼ା ହ ମ! ମୁଁ ଗାଧୋଇ ସାରେ ସାଙ୍ଗହୋଇ ଯିବା। ଗୋଟିଏ ଖାଲରେ ଅଣ୍ଟୁଏ ପାଣିରେ ଗାଧୋଉ ଗାଧୋଉ ଡାକଦେଲା ତୁଳସୀ।

ଚଇତା ତା' ଆଡ଼କୁ ଚାହିଁଲା ବେଳକୁ ଅର୍ଦ୍ଧ ଉଲଗ୍ନ ଦେହଟାକୁ ପାଣିଭିତରେ ବୁଡାଇ ଦେଇଥିଲା ତୁଳସୀ। ଚଇତା ଏକଲୟରେ ଚାହିଁଥିଲା ତୁଳସୀ ଆଡ଼କୁ- ଏ ଚଇତା! ଏମିତି କ'ଣ ଚାହିଁଛୁ ମ? ସିଆଡ଼େ ଅନା ମୁଁ ଲୁଗା ପିନ୍ଧିବି।

ଚଇତା ହସିଦେଇ ଅନ୍ୟଆଡ଼େ ମୁହଁ କଲା। ତୁଳସୀ ଲୁଗାପିନ୍ଧିସାରି ଚଇତାକୁ କହିଲା ଚାଲ ତୁ ଆଜି ଆମଘରକୁ ଚାଲ, ମୋ ମା କହିଛି।

ତୁଳସୀ ଚଇତାର ହାତଧରି ତାଙ୍କ ସାହିଆଡ଼େ ମୁହାଇଲା।

ଚଇତା- ସବର୍ଣ୍ଣ ଯୁବକ, କଟକ ଜିଲ୍ଲାର କେଉଁ ଏକ ଅଖ୍ୟାତ ପଲ୍ଲୀରେ ତା'ର ଜନ୍ମ। ସେ ବିବାହିତ, କିନ୍ତୁ ବିବାହର ୫ ବର୍ଷ ପରେ ମଧ୍ୟ କୌଣସି ପୁତ୍ରସନ୍ତାନ ଜାତ ନହେବାରୁ ଗାଁର ନାହାକ ପାଖରେ ଜାତକ ଦେଖାଇଛି ସେ। ସ୍ତ୍ରୀ ରୂପେଇ ଗର୍ଭରୁ ପୁତ୍ରସନ୍ତାନର ଆଶା ନାହିଁ ବୋଲି ଜଟିଆ ନାହାକର ଖଡ଼ିପକା କଡ଼ାଗଣ୍ଡା ହିସାବ ପରେ ସାମାନ୍ୟ କାରଣରୁ ଘରକଳି ଓ ଏହାକୁ କେନ୍ଦ୍ରକରି ଘରଛାଡ଼ି ବାରିଦୋରେ କେଉଁ ଏକ ଅଜ୍ଞ ଅଞ୍ଚଳରେ ମାଟିକାମ କରେ, ଖଟେ ଖାଏ।

ଆଉ ତୁଳସୀ……

ସେ ଅବିବାହିତା, କନ୍ଧ ସର୍ଦ୍ଦାରର ସତର ଅଠରବର୍ଷର ଗୋଟିଏ ପାଳିତା ସାନ୍ତାଳ କନ୍ୟା । ବୟସର ପୂର୍ଣ୍ଣତା ସଙ୍ଗେ ସଙ୍ଗେ ଶୈଶବର ମଧ୍ୟ ପୂର୍ଣ୍ଣତା ଆସିଯାଇଛି । ପ୍ରାବଟର କୂଳ ଉଛୁଳା ତଟିନୀ ପରି ତା'ର ଅଙ୍ଗସାରା ଯୌବନ ବିଭବ ଉଛୁଳି ପଡ଼ୁଛି । କଳାମୁଗୁନି ପଥର ପରି ତା'ର ଚିକ୍କଣ ବଳିଷ୍ଠ ଦେହ । ମୟୂରଭଞ୍ଜର ପାହାଡ଼ ଜାଙ୍ଗଲମୟ ଭୂଖଣ୍ଡପରି ତାର ବକ୍ଷୋଜ ଦୁଇଟି ସୁଚଗୋଲ, ବଳିଷ୍ଠ ବାହୁଲତା । ଯୌବନର ଏହିସବୁ ଲୋଭ-ନୀୟ ବିଭବରାଜି ତା ଅଙ୍ଗରେ ପରିପୂର୍ଣ୍ଣ ।

ସେହି ଲାସ୍ୟମୟୀ ଷୋଡଶୀ ରୂପସୀ ହେଉଛି ଚଇତାର ସାଥୀ । ଚଇତା ମୁଣ୍ଡରୁ ସେ ମାଟିବୋଝ ଲଦିଦିଏ । ଚଇତା ମାଟିବୁହେ । ଯାହାଟଙ୍କା ମିଳେ ଅଧା ଅଧା ।

ଦୂରରୁ ନୂଆଣିଆ ଚାଳଘରଟାଏ ଦେଖାଇଲା ତୁଳସୀ, -ଏଇଦେଖ ସେଇ ଯୋଉ ଚାଳଘରଟା, ସେଇଟା ଆମର ବୁଝିଲୁ ।

ଚାଳଘର ଭିତରକୁ ଟାଣି ଟାଣି ନେଇ ଗୋଟିଏ ଭଙ୍ଗା ଖଟିଆ ଉପରେ ବସାଇଦେଲା ତୁଳସୀ । -ଦେଖ ଆଇ ଏଇଟା ଚଇତା, ମୋ ସାଙ୍ଗ, ମୋ ସାଙ୍ଗରେ ମାଟି ଉଠାଏ ।

ଅନ୍ଧୁଣୀ ବୁଢୀଟାଏ ବଙ୍କୁଲି ବାଡ଼ି ଧରି ଉଠୁଥିଲା ।

ଚଇତାକୁଦେଖି ଚେପଟା ସିଲଭରବେଲାଟିଏ, କୋଅଁଳରୁକେତୁଟା ରେଜାପଇସା ଧରି କେଉଁଆଡ଼େ ଚାଲିଗଲା । ବୁଝିଲୁ ଚଇତା, ଆଜି ଆମର ପରବ । ଏଇଟା ଆମର ବଡ ପରବ ମକର, ବୁଝିଲୁ ?

ଚଇତା ଭାବୁଥିଲା ଆମର ରଜ, ଦୋଳ, ରଥ ପରି ହୁଏତ କିଛି ଗୋଟାଏ ହୋଇଥିବ ।

ହଁ ବୁଝିଲି । ଚଇତା ଉତ୍ତର ଦେଲା ।

ଅନ୍ଧୁଣୀ ବୁଢ଼ୀଟି ଚେପଟା ସିଲଭର ବେଲାରେ ହାଣ୍ଡିଆ ଧରି ଫେରିଲା ।

ତୁଳସୀ କବାଟ ଆଉଜେଇଲା ।

ସିକାରୁ ପୁଳାଏ ମୁଢ଼ୀ ଆଣି ପତରରେ ଢାଳିଲା । ବକ ବକ କରି ଗୁହୁଁଥିଲା ଚଇତା ।

ତତେ ଡର ମାଡୁଚିକି ଚଇତା ?

ମୋ ଘରେ ଏମିତି ପାଞ୍ଚଦିନ ରହିଲେବି ତୋର କେହି କିଛି କରି-ପାରିବେନି, ଏଇନେ ଏ ହାଣ୍ଡିଆ ଟୋପାଏ ପିଇଦେ, ମନଟା ଚଙ୍ଗାକରିଦେ

ହାଣ୍ଡିଆ ବୋତଲଟା ବଢ଼େଇଦେଲା ତୁଳସୀ ।

ହାଣ୍ଡିଆ ?

ହଁ କ'ଣ ହେଲା ସେଥିରୁ, ନେମ ପିଇଦେ, ଆଉ ହେଇ ନେ ଏ ମୁଢ଼ୀ ଗଣ୍ଡାକ ଖାଇଦେ ! ବୁଝିଲୁ, ବାରିପଦା ମୁଢ଼ୀ ।

ଖାଇବାର ମୋଟେ ଇଚ୍ଛା ନଥିଲେବି, ସାଙ୍ଗଟା, ପୁଣି ଷୋଡ଼ଶୀ, ମନରେ ଯୌବନର ଉତ୍ସବ ଚଢ଼ିଲା । ବହୁ ଦିନରୁ ଏପରି ସୁହାଗ ତା'ର ଚମ୍ପାଛଡ଼ା ଆଉ କିଏବା ଡାକିଛି ?

ଢ଼କ ଢ଼କ କରି ପୁଳାଏ ତତଲା ବିଷ ପିଇଗଲା ଚଇତ: ।

ସେତିକି ପିଇଥାବେ ଚଇତା ନିଶା ଧରିଯିବ, ଡାକିଲା ତୁଳସୀ ।

ତୁ ଆଜି ଘରକୁ ଯାଆନା ଏଇଠି ଶୋଇପଡ଼ । ମାତାଲ ଚଇତାକୁ ଭଙ୍ଗା ଖଟିଆ ଉପରେ ଶୋଇଦେଇ ନିଜେ ଶୋଇଗଲା ତୁଳସୀ । ସେ ପ୍ରେମ ପାଗଳ ତା'ଠରେ କେତୋଟି ଦୀର୍ଘଶ୍ୱାସ ।

## ତିନି

ଚମ୍ପା ଶୋଇଛି,

ନିଦ୍ରାଦେବୀ ବରମ୍ବାର ତା ନିକଟକୁ ଆସି ପୁଣି ଫେରିଯାଉଛନ୍ତି । ଚିନ୍ତାଦେବୀଙ୍କ ଉପସ୍ଥିତି ଯୋଗୁଁ ଚମ୍ପା ମନରେ ଅନେକ ଚିନ୍ତା, ଅନେକ ଭାବନା, ଚଇତା ପାର୍ଖ ଦୁଇବର୍ଷ ହେବ ଘରୁ ଚଳାଇଛି ଚମ୍ପା ସହିତ ସମସ୍ତ ସମ୍ପର୍କ ତୁଟାଇ । ଶୁଣିଛି— ସେ କେଉଁ ସାନ୍ତାଳ କନ୍ୟାକୁ ବିବାହ କରିଛି । ଚମ୍ପା ମନରେ ଅନେକ ଭାବନା ।

ସବୁ ପୁରୁଷ ଏକାଧିକ ନାରୀର ଓଷ୍ଠ— ଓଠର ଚରଣ ଗୃହାନ୍ତ । ଆଉ ସବୁ ନାରୀ ? ସେ କ'ଣ କରିବ ? ରାକ୍ଷସୀ ସାଜି ହାତରେ କାମନାର ନିଆଁ ହୁଳା ଧରି, ବେକରେ ସ୍ୱାର୍ଥର ମୁଣ୍ଡମାଳ ପକାଇ ସର୍ବଗ୍ରାସି କ୍ଷୁଧାର ଲେଲିହାନ ଜିହ୍ୱାକୁ ଧରି ସମାଜର ଏ ରକ୍ଷଣଶୀଳତାର ମାଳା ଝୁଲାଇ ତୁଣ୍ଡରେ ସ୍ୱାମୀ ଦେବତାର ପବିତ୍ର ନାମଧରି ଶେଷ ନିଶ୍ୱାସ ତ୍ୟାଗ କରିବ ।

ନା !······

ସେ ନାରୀ, ହିନ୍ଦୁନାରୀ । ଯେଉଁ ଯଜ୍ଞ ବେଦୀରେ ବସି ଅଗ୍ନିଦେବ-ତାଙ୍କୁ ସାକ୍ଷୀରଖି ତାଙ୍କୁ ପତି ରୂପରେ ବରଣ କରିଛି, ସେ ସର୍ବସ୍ୱ ଇହକାଳ ପରକାଳର ଦେବତା । ମୋ ସ୍ୱାମୀ ଯେଉଁଠି ଥାଆନ୍ତୁନା କାହିଁକି, ହେ ଭଗବାନ ! ତାଙ୍କୁ ସୁଖରେ ରଖ ।

ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣତି ଢାଳୁଥିଲା ଚମ୍ପା ।

× × × ×

ଏ ମିଶିପ, ଉଠ୍ । ଉଠ୍‌ମ । ଛୁଆଟା କାନ୍ଦୁଛି ତାକୁଟିକେ ନେ ।

ଛୁଆଟିକୁ କୋଳକଲା ଚଇତା ।

ଆଖିରୁ ତା'ର ଶ୍ରାବଣୀ ଝରୁଛି । ସତେ ଅବା ବନ୍ଧ ବାଡ଼ ଭାଙ୍ଗି କେଉଁ ମନ ସମୁଦ୍ରରେ ମିଶିଯିବ ।

—ତୁ କାନ୍ଦୁଛୁ ? ପ୍ରଶ୍ନକଲା ତୁଳସୀ ।

ହଁ ଲୋ ତୁଳସୀ, ଆଜି ଯଦି ଚମ୍ପାକୋଳରେ ଏ ଛୁଆଟା···

ଚମ୍ପା ?

ହଁ ଚମ୍ପା, ସେ ମୋ ସ୍ତ୍ରୀ, ମୁଁ ତାକୁ ଯଦ ବେଦୀରେ ଭଗବାନଙ୍କୁ ସାକ୍ଷୀରଖି ବୈଦିକମତରେ ବିବାହକରିଥିଲି । ନାହାକ ମନାକଲି, ଡାକ୍ତରଙ୍କୁ ଦେଖାଇଲି । ସେ କହିଲେ ଚମ୍ପା ବନ୍ଧ୍ୟା । ତା'ପରେ ମୁଁ ତାକୁ ଛାଡି ଚାଲି ଆସିଲି !

ଘରେ ଯୁଆନ ତଶଲା । ତୁମତେ- ତୁ ମତେ ବାହା ହଉଥିଲୁ କାହିଁକି ? ଦେଖ ତତେ ଧରମ ଖସିଲଣି, ତୁ ତଶଲ ଜାତିକୁ ଠକେଇଛୁ । ଏଇଟା ଭଲ ହେବନି । ମନେ ମନେ କ'ଣ ଗୋଟାଏ ଚିନ୍ତାକଲା ତୁଳସୀ । ହେ ତୁ ଯାହା କହୁଥିଲୁ ତୋ ବାପଘରକୁ ଯିବୁବୋଲି । ଦି ଚାରି ଦିନ ବୁଲି ଆସିବୁ । ଯା ଚାଲିଯା ।

ଘରକୁ ଯିବ ? କେଉଁ ମୁଁହରେ ଯିବ ? ଇଚ୍ଛା ନଥିଲେ ବି ତୁଳସୀ କଥାରେ ହଁ ଭରିଲା ଚଇତା । ପରଦିନ ନିଜ ଘରକୁ ଚାଲିଲା ଚଇତା ।

## ଚାରି

ସ୍ୱାମୀ ଆସିଛନ୍ତି ।

ମୁଣ୍ଡ ନୁଆଁଇ ଓଳଗି ହେଲା ଚମ୍ପା ।

ମୁଁ... ମୁଁ ବିବାହ କରିଛି ଚମ୍ପା ।

ହଁ କ'ଣ ହେଲା ସେଥିରୁ ? ନିଜର କୋହ ସମ୍ବରଣ କରି ପ୍ରଶ୍ନକଲା ଚମ୍ପା ।

ଆଚ୍ଛା କହିଲ ସେ ଝିଅଟିର ନାଁ କ'ଣ ?

ତା ନାଁ- ତା ନାଁ ତୁଳସୀ ।

ତୁଳସୀ, ବଢ଼ିଆ ନାଁ ଟାଏତ । ସିଏ ଭାଗ୍ୟବତୀ, ତମପରି ସ୍ୱାମୀ-ଟିଏ ପାଇଛି, ଆଉ ମୁଁ... । ହଉ ରାତି ବେଶି ହେଲାଣି ତମେଯାଅ ଶୋଇବ ମୁଁ ଯାଉଛି । ଆଖିରୁ ଲୁହ ପୋଛି ଆରଘରକୁ ଚାଲିଗଲା ଚମ୍ପା ।

ରାତି ଅନେକ, କିନ୍ତୁ ଚମ୍ପାକୁ ନିଦନାହିଁ । ମନ ଭିତରେ ଅନେକ ପ୍ରଶ୍ନ । ... କିଏ ସେହି ପାହାଡ଼ କନ୍ୟା ?

କାହାର ରୂପ ଯୌବନରେ ମୁଗ୍ଧ ହୋଇ ସ୍ୱାମୀ ମୋର ତାଙ୍କୁ ବିବାହକଲେ ?

କିଏ ? କିଏ ?

ଠକ୍, ଠକ୍, ଠକ୍ ବାଡ଼ପଟ ଦରଜାରେ କିଏ ଆଘାତଦେଲା । ଚମ୍ପା କାନ ଡେରିଲା । ଏତେ ରାତିରେ କିଏ ?

ସନ୍ଦେହୀ ମନନେଇ ଦରଜା ଖୋଲିଲା ଚମ୍ପା । ···ଦିଦି ଦିଦି ମୁଁ ତୁଳସୀ । ଏଇ ନେ ଏ ପୁଅଟା ରଖ । ତୋର ମିଣିପ ଦରକାର ତାର ପୁଅ ଦରକାର ତୋର,ମିଣିପର ଏଟା ପୁଅ ରଖ । ମୁଁ ଯାଉଛି, ତାକୁ ପର କରିବୁନି; ତୁ ପୁଅ ଚାହିଁଲୁ ଆମେତ ଛୋଟ ଜାତି, ଆଜି ଏଠେଇଁ ତ କାଲି ସେଠେଇଁ ତୋ ପୁଅ ରଖ, ମୁଁ ଯାଉଛି ଦିଦି । ଏକା ନିଶ୍ୱାସରେ କଥା ଦି'ପଦ କହି ଚାଲି-ଯାଉଥିଲା ତୁଳସୀ ।

ପଛରୁ ଡାକିଲା ଚମ୍ପା । ସେତେବେଳକୁ ଘନ ଅନ୍ଧକାରରେ ମିଶି ଯାଇଥିଲା ତୁଳସୀ । ଛୁଆଟିକୁ ଧରି ଗୋଟିପୁଣି ଥରୁଥିଲା ଚମ୍ପା । ନୁଆଟି କାନ୍ଦି ଉଠିଲା । ସେତେବେଳକୁ ବିଛଣାରୁ ଉଠିଆସି ଚମ୍ପା ପଛପଟେ ଛିଡ଼ା ହୋଇଥିଲା ଚଇତା ।

ଭାବୁଥିଲା ସାନ୍ତାଳ ଜାତି ଅନାର୍ଯ୍ୟ, ଅଶିକ୍ଷିତ, ଅପବିତ୍ର ହେଲେବି ସେମାନଙ୍କ ହୃଦୟରେ ଏପରି ପବିତ୍ରତା !



# ରୂପା

ହଇଲୋ ଛତଖି, ସକାଳ ପହରୁ କୁଆଡ଼େ ଯାଇଥିଲୁ କଲୋ ? କୋଉ ଘଇତା ପାଖକୁ ଯାଇଥିଲୁବା ! ତତେ କାଲିଠାରୁ କହୁଛି 'ପୁଅଟା ମୋର ଥାନାରେ ଉପାସରେ ଘଣ୍ଟା ଠେଲୁଥିବ । ଟିକେ ଥାନା ବଡ଼ବାବୁ ପାଖକୁ ଯା, ହଲେଇ ଗେହ୍ଲେଇ ଥାନାବାବୁଙ୍କୁ ଟିକେ ନେହୁରାହୋଇ କହିଲେ ପୁଅଟା ମୋର ମୁକୁଳି ଯାଆନ୍ତା

ଚନ୍ଦ୍ରାବଷି ଖୁଦ ମୁଠାକରୁ ଗୋଡ଼ି ବାଛୁଥିଲେ ।

ତୁ ମା' ହୋଇ ଏକଥା କହିପାରୁଛୁ ବୋଉ ! ତତେ ଟିକିଏ ଲାଜ ମାଡୁନାହିଁ, ସେ ଥାନାବାବୁଟା ଭାରି ଖରାପ ଲୋକ । ତା' ଲୋଭିଲା ଆଖି... ମୁଁ ଜମା ଯାଇପାରିବିନି । ମାଧ କାହିଁକି ଚେଷ୍ଟା କରୁଥିଲି । ତୁ ଚାଲିଯା ଥାନାବାଲାଙ୍କୁ କହିବୁ ।

ଆଖିରୁ ଲୁହ ପୋଛୁ ପୋଛୁ ରୂପା ଉତ୍ତର ଦେଲା । ହଇଲୋ ଷଣ୍ଡି, ମୁଁ କ'ଣ ଆଉ ଯାଇ ନଥିଲିକି । ମୁଁ ଯେତେବେଳେ ରାଜଉଆସରେ ନାଚ କରୁଥିଲି ସେତେବେଳେ କେତେ କେତେ ବଡ଼ ଲୋକଙ୍କୁ ସିପେଇବାବୁ ଠାରୁ ମୁକୁଳେଇ ନାହିଁକି ?

ନଆଁଟିଳା ସରକାର ( ଇଂରେଜ ସରକାର ସିନା ବଦଳିଗଲା । ଏଣେ ଅଳପେଇସା ବସୁସଭାବ ବଢିଗଲା । ନହେଲେ ତତେକିଏ ଖୋସାମତ କରୁଥାନ୍ତା । ହଇଲୋ ! ତୋର କିଏ ବୋଉ... । ଆଲୋ ମୁଁ କ'ଣ ତୋତେ ଶୂଳ ଖୁଣ୍ଟ ପକାଇ ଜନମ କରିଥିଲିବା । ତୁ କା'ଝିଅବା, ମୋତେ ବୋଉ ବୋଲି ଡାକିବୁ । ହଇଲୋ ତତେ କୋଉ ରାଇଜଲା ଛତଖି ଜନମ ଦେଇ ବାଟରେ ଫୋପାଡି ଦେ ଗଲା । ଆଉ ଏ ଡାକୁଣୀଖିଆଟା(ତା'ସ୍ୱାମୀ) ମୋପାଖରେ ଛାଡିଦେଇ ଚାଲିଗଲା । କହୁଛି କଣନା ବୋଉ........ ।

ନର୍ତ୍ତକୀ ଚନ୍ଦ୍ରାବତୀର ପାଳିତା କନ୍ୟା ରୂପା ।

ଚନ୍ଦ୍ରାବତୀର ରାତରେ ସର୍ବାଙ୍ଗ ଅନୁଥିଲା । ଦେହ ନ ବିକିଲେ ପରିବାର ଚଳିବ କିମିତି ? ଯେତେବେଳେ ସେ ଯୁବତୀ ଥିଲା, ସେଥିଲା ରାଜ ଉଆସର ଶ୍ରେଷ୍ଠ ନର୍ତ୍ତକୀ । ରାଜକୁମାରଙ୍କ ଅଙ୍ଗସଙ୍ଗିନୀ, ଆଉ କୌଣସି ଦେଶରୁ ଅତିଥି ଆସିଲେ ତାଙ୍କର ସେବା ପାଇଁ ପ୍ରଥମେ ଚନ୍ଦ୍ରାବତୀକୁ ଡ଼ କରା ହେଉଥିଲା । ଚନ୍ଦ୍ରାବତୀର ଚନ୍ଦ୍ର ହରଣ ହେଲା ସମୟର ରଥଚକ ତଳେ । ଇଂରେଜ ଗଲେ, ଦେଶ ସ୍ୱାଧିନ ହେଲା । ରାଜଉଆସରେ ନୃତ୍ୟ, ଗୀତ ବନ୍ଦ ହେଲା । ଚନ୍ଦ୍ରାବତୀର ଆୟ ପନ୍ଥାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଏକୋଇର କ୍ୱାଲିଫିକେଶନ ମାଧ । କର୍ମଚୋର ସେ । କେଉଁଠି ଚୋର କଲାତ କେଉଁଠି ମଦ ପିଇ ଜୁଆ ଖେଳିଲା । ପର ଝିଅ, ବୋହୂଙ୍କ ପଣତ ଟାଣିଲା । ବେଶ୍ୟା, ନର୍ତ୍ତକୀର ସନ୍ତାନ କ'ଣ କେବେ ଚରିତ୍ରବାନ୍ ହୋଇପାରେ ?

ଚନ୍ଦ୍ରାବତୀ ରୁଗ୍‌ଣ, ଅକର୍ମଣ୍ୟ, କେବଳ ସାହା ଭରସା ରୂପା ।

ରୂପା, ରୂପା, ଲୋ ରୂପା··· । ଆ, ମା, ଆଇଲୁ, ଶୁଣ୍ । ମୁଁ'ତ ଆଉ ରୋଜଗାର କରିପାରୁନ । ପୁଅଟାତ ଆଜ ଏ ଓଳି, ସେ ଓଳି ହେଲା । ଏ ଘର ଚଳିବ କେମିତି । ମୋ ମା'ଟା ପରି, ମୋ ସାନକୁହା କଥା ମାନ୍ । ଦେହଟା କାରବାର କଲେ ସରିଯିବନି ।

ମୁଁ'ତ ପୁଣି ଟଙ୍କା, ସୁନା ସବୁ ଆଣୁଥିଲି । ମୋ ମା'ଟା ପରି, ଆଜ ସିନା ପାଞ୍ଚଟାର ମାଇପ ହେବାକୁ ମନା କରୁଛୁ; କାଲିତ ପୁଣି ଗୋଟାକର ହବୁ ।

ମୋ ମା'ଟା ପରି ।

ଦେଖ୍ ବୋଉ ! ଏକଥା ଆଉ କହିବୁନି । ମୁଁ ମେହନତ୍ କରି ଖାଇବି । ଦେହ ବିକିବା କଥା କହନା । ତୋ ଆଖି କ'ଣ ଫୁଟି ଯାଇଥିଲା । ସେଦିନ ସେ କାନ୍‌ଟ୍ରାକ୍‌ଟ ବାବୁଟା ମୋ କାନି ଟାଣିଦେଲା ବୋଲି ମୁଁ ତା ପାଖରୁ କାମ ଛାଡିଦେଲି । ଆଉ ସେ ହୋଟେଲ୍‌ବାଲାଟା ! ମତେ ଇଙ୍ଗିତ

କରି କହିବାରୁ ମୁଁ ତା ଉପରକୁ ଡେଇଁପଡ଼ି ପୋପାଡ଼ିଲି, କ'ଣ ଶୁଣିନୁ ? ପଛେ ଶୋକ ଉପାସରେ ମରିବି ହେଲେ ଦେହ ବିକିବିନି । ମୁଁ ଯଦି ତୋର ଜନ୍ମକଲା ଝିଅ ହୋଇଥାନ୍ତି, ତୁ କ'ଣ ଏଇ କଥା କହିଥାନ୍ତୁ ?

କାନ୍ଦି କାନ୍ଦି ବାରିପଟକୁ ଚାଲିଗଲା ରୂପା ।

ମନେ ମନେ କିଛି ଗୋଟାଏ ନୂଆ ଉପାୟ ଚିନ୍ତାକଲେ ଚନ୍ଦ୍ରାବତୀ ବାରିପଟକୁ ଯାଇ ରୂପାକୁ ଡାକିଲେ—

ହଇଲୋ ରୂପା ! ସେ ଖୁଦ ଗଣ୍ଡାକ ଶୋଷେଇ କରିଦେ । ମୁଁ ଟିକେ ବଜାରରୁ ଆସେ । ବଙ୍କୁଲିବାଡ଼ି ହାତରେ ଧରି ଚନ୍ଦ୍ରାବତୀ ଚାଲିଗଲେ ।

× × ×

ବଜାରରୁ ଫେରିଲା ପରେ ରୂପା ରାନ୍ଧିଥିବା ଭାତଗଣ୍ଡାକ ତା' ଆଗରେ ଥୋଇଦେଲା । ଦୁହେଁ ମିଶି ଖାଇଲେ । ହଠାତ୍ ଚନ୍ଦ୍ରାବତୀ କଥା ଆରମ୍ଭ କଲା । ବୁଝିଲୁଲୋ ଝିଅ । ତତେ କେମିତି ହାତକୁ ଦିହାତ କରିଦେଲେ ମୁଁ ଟିକେ ଶାନ୍ତିରେ ନିଶ୍ୱାସ ମାରିବି । ଆଜି ବରଘର ଦେଖିବାକୁ ଆସିବେ କୋଉ କାଲରୁ ପଣ୍ଟମଜର୍ଜ ଠଙ୍କାଟିଏ ରଖିଥିଲି । ତାକୁ ନେଇ ବଜାରରୁ ବାସନା ତେଲ ଆଣିଛି ଲଗେଇପକେଇ ଟିକେ ମୁଣ୍ଡ କୁଣ୍ଡାଇପକା ।

ଯେଉଁ ମା' ଘଣ୍ଟାଏ ପୂର୍ବରୁ ଦେହବିକିବାକୁ କହୁଥିଲା ଯାହାର ଜନ୍ମକଲା ଝିଅ ଥାନା ହାଜତରେ ସେ କଣ ସତରେ ପାଳିତ କନ୍ୟା ରୂପାର ବିବାହ ପାଇଁ ଚିନ୍ତିତ ? ରୂପା ମନରେ ଅହେତୁକ ପ୍ରଶ୍ନ । ସନ୍ଦେହଭରା ମନରେ ନିଜକୁ ସଜେଇ ନେଲା । ବହୁତ ଦିନରୁ ସାଇତା ଶାଢ଼ୀ, ବ୍ଲାଉଜ ଖଣ୍ଡିକ ପିନ୍ଧିଲା ।

ସନ୍ଧ୍ୟା ଆଗତ ପ୍ରାୟ, ପଡ଼ିଶା ଘରର କୂଳ ଭୂଆଶୁଣୀ ମୁଣ୍ଡରେ ଓଢ଼ଣା ଦେଇ ସଞ୍ଜସଳିତା ଦେଲଣି । ଗୃହଶାଳୀରୁ ଗ୍ରେହପିଲାଙ୍କ ବିଜଂକ୍ତିତ ପରମବ୍ରହ୍ମର ପ୍ରାର୍ଥନା ଶୁଭୁଛି । ଚନ୍ଦ୍ରାବତୀ ସ୍ୱର ଶୁଭିଲା ।

ରୂପା ! ରୂପା ! ସେ ଆସିଲେଣି ।

ରୂପା ପୁଣି ଥରେ ନିଜକୁ ସଜେଇ ନେଲା ।

ଜଣେ ପୌଢ଼, ଚନ୍ଦ୍ରାବତୀର ଦ୍ଵାରଦେଶରେ ।

ଡ଼ବର ଆଲୁଅ ଭିତରେ ଚନ୍ଦ୍ରାବତୀ, ଓ ପୌଢ଼ ଜଣକ କିଛି ସମୟ ଫୁସ୍ ଫାସ୍ କଥାବାର୍ତ୍ତା ହେଲେ । ତା'ପରେ ( ସମ୍ଭବତ ) କିଛି ଟଙ୍କା ପୌଢ଼ ଜଣକ ଚନ୍ଦ୍ରାବତୀ ହାତକୁ ବଢ଼ାଇ ଦେଲେ । ଝରକା ଫାଙ୍କରେ ଏସବୁ ଦେଖୁଥିଲା ରୂପା ।

ଡବର ଅସ୍ପଷ୍ଟ ଆଲୋକରେ ରୂପା ଚିହ୍ନି ପାରୁଥିଲା ସେହି ପୌଢ ଜଣକୁ । ସେ କି ଜଣେ ହୋଟେଲ ମାଲିକ ଯାହାକୁ କିଛିଦିନ ତଳେ ଅଶ୍ଳୀଳ ଇଙ୍ଗିତ ଅଭିଯୋଗରେ ବର୍ଜି ଭେଲୁଅ ଫୋପାଡି ମୁଣ୍ଡ ଫଟାଇଥିଲା ରୂପା ।

କୁଆଁଣିଆ ଗୁହଳଘର ଭିତରେ ବସିଥିଲା ରୂପା । ଚନ୍ଦ୍ରାବତୀ ପୌଢ ଜଣକୁ ସେହି ଘରର ଦ୍ଵାର ଦେଶରେ ଛାଡ଼ିଦେଇ 'ମୁ ଆସୁଛି' କହି କେଉଁ-ଆଡ଼େ ଗୁଲିଗଲେ । ପୌଢ଼ ଜଣକ ଘର ଭିତରେ ପ୍ରବେଶ କରି ଭିତରପଟୁ କବାଟ ବନ୍ଦ୍ କଲେ ।

× × ×

ରୂପା, ଆଗରୁ ପ୍ରସ୍ତୁତ ହୋଇଥିଲା ।

ପୌଢ଼ର ପ୍ରବେଶ ମାତ୍ରେ ଶାଗକଟା ପନିକି ଧରି ପୌଢ଼କୁ ହାଣି-ବାକୁ ଧାଇଁଲା ରୂପା ।

ପ୍ରାଣ ବିକଳରେ ଧାଇଁ ପଳାଇଲେ ପୌଢ଼ ।

× + ×

ରୂପାର ଅନ୍ତର ମଧ୍ୟରେ ଦ୍ଵନ୍ଦ, ମନ ବିବେକ, ସାବତମା, ବଞ୍ଚିବାର ଉପାୟ, ସତୀ, ଅସତୀର ମଧ୍ୟରେ ପ୍ରତିଦ୍ଵନ୍ଦିତା ଲାଗି ସମାଧାନ ହେଲାବେଳକୁ ସକାଳ ୯ଟା ହୋଇଯାଇଥିଲା । ହଠାତ୍ ମାଧବ ଗର୍ଜନରେ ରୂପାର ନିଦ୍ରା ଭଙ୍ଗ ହେଲା ।

'ଶାଳୀ' ସକାଳ ଦଶଟା ପର୍ଯ୍ୟନ୍ତ ଶୋଉଛୁ, ମୁଁ କୋଉଠି ଗ୍ଲେଲ, ନାଶ କର ରୋଜଗାର କର ଟଙ୍କା ଆଣିବ ଆଉ ଏ ଘରେ ବସି ଗେଫା ଗିଳବ ଗେଫା । ଥାନାବାବୁ ପାଖକୁ ଯାଇଥିଲେ ମୁଁ ଭଲରେ ମୁକୁଳ ଯାଇଥାନ୍ତି ।

ତୁ, ଗ୍ଲେଲ କରବୁ, ମୁଁ କାହାଁକ ଥାନାକୁ ଯିବ ?

ଉତ୍ତର ଦେଲ୍ ରୂପା ।

ର' ଲେ ରଣ୍ଡି ତୋ ସତୀପଣିଆ ଏଇନାକେ ଛଡ଼ାଉଛୁ । ତା ପରେ ରୂପାର ପିଠି, ଗାଲ, ମୁଣ୍ଡ ଗ୍ଲଭ ଉପରେ ମାଧର ଢଧା, ଗୃପୁଡା, ଗୋଇଠା, ଗଙ୍କ ଉଠିଲ ।

ତ୍ରଚ୍ଛୋହ ଏଇଟା ଥିଲ୍ ରୂପାତ୍ରଭ ତ୍ରାପୂ ସବୁଦନର ଜଳଖିଆ ।

ତୁ ଘଇ ହୋଇ ଏକଥା କହପାରୁଛୁ ?—

ରୂପାର ପାଟି ଫିଟିଲା ।

ଆଲୋ କଏଲେ ତୋର ଘଇ, ହଇଲେ ଏଇନାକେ ଉ଼ହଳ ବାକଳ ହେଉଛୁ । କାଲ ଯେତେବେଳେ ତତେ ନେହୁର ହେଉଥିଲ । ଆଲୋ ଘବାଖାଇ ସେ ଥାନାବାବୁ ପାଖକୁ ଢଡ଼ଏ ଯାଇଥିଲେ କୋଉ ସଖ ପଣଟା ମାଗ୍ ହୋଇ ଯାଉଥିଲ । ବେଶ୍ୟା କେଉଁଠିକା । ଚନ୍ଦ୍ରାବତୀ ରାଗ ତମ ତମରେ କହ ଯାଉଥିଲେ ।

ଏ ଗାଳ ଶୁଥିମାତ୍ର ନଥିଲ୍ ରୂପା । ମାଧ ମାଡରେ ଅଚେତ ହୋଇ ପଡଥିଲ୍ ରୂପା

ସଜ୍ଞା ଫେରଲ୍ ରୂପାର ।

ରୂପା ବାଉଳେଇ ହେଉଥିଲା ।

ବୋଉର ଟଙ୍କା ଦରକାର, ଘର ଚଳବା ପାଇଁ, ମାଧର ଟଙ୍କା ଦରକାର ମଦ ପିଇବା ପାଇଁ, କଣ୍ଟ୍ରାକ୍ଟର ରୂପ କଣିବ । ହୋଟେଲ ମାଲିକ ଯୌବନକୁ ଖିନ୍‌ଭିନ୍ କର ପ୍ରତି ବଦଳରେ ପଇସାଦେବ ।

ଟମା ଟାଙ୍କରେ ଯୌବନ ଯାହା ଉପରେ ନରମାଂସ ଲୋଭ ପନ୍ଦର ବର୍ଷ ବୟସରେ ଦୌଡ଼ିର ଲୋଭିଲା ଅଖି ଅଛି । ନାଁ ନାଁ, ଯା'ର ଧନ ନାହିଁ ତା'ର ଯୌବନ କ'ଣ ଦରକାର । ଯିଏ ଭୁଲିଗଲେ ଶଯ୍ୟାରେ ରହି ଶହସ୍ର ଶଯ୍ୟାର ନାୟିକା ସାଜେ ସେ ସଖି, ଯିଏ ପେଟରେ ଓଦାକନା ଦେଇ ସଖିତ୍ୱକୁ ବଜାୟ ରଖେ ସେ କେବେ ସଖି ହୋଇ ପାରେନା ।

ବୋଉ, ତୋର ଟଙ୍କା ଦରକାର୍ ନା । ଗୁଲ୍ ସେ ହୋଟେଲ୍ ଟା ଦେଖାଇ ଦବୁ ବୋଉ !

ଦୁଇଦିନ ହେଲା ରୂପା ଶେଯରୁ ଉଠିନି । ହଠାତ୍ ଚନ୍ଦ୍ରାବତୀଙ୍କ ମଟର ଦୁର୍ଘଟଣା ସମ୍ବାଦପାଇ ବିଚଳିତ ହେଲା ରୂପା । ଡାକ୍ତରଖାନାରେ ପହଞ୍ଚିଲା । ଡାକ୍ତରଙ୍କ ପରାମର୍ଶ ଔଷଧ ନ କିଣିଲେ ସେ ଆଉ ବଞ୍ଚିବେ ନାହିଁ । ପାଦ କାଢ଼ିଲା ରୂପା, କେଉଁ ଏକ ନର୍କ ଆଡ଼କୁ ।

× × ×

ଦୀହାନ୍ତା ପହରକୁ ଘରକୁ ଫେରିଲା ରୂପା । ମଦପିଇ, ଟଳି ଟଳି ଆସୁଥିଲା, ପାଦ ଦୁଇଟା ତାର ସ୍ଥିରହୋଇ ରହିପାରୁନି ।

ଚନ୍ଦ୍ରାବତୀର ରୋଗଶଯ୍ୟା ନିକଟରେ ଢୁଳେଇ ପଡ଼ିଛି ମାଧ ।

ଡିବି ଅଲୁଅ ଜଳୁଛି ।

ବୋଉ ! ବୋଉ !

ତୋର ଟଙ୍କା ଦରକାରପା, ନେ ଏଇ ନେ ଟଙ୍କା, ତୋ ଝିଅ ଆଜି ତୋ କଥା ମାନି ଟଙ୍କା ରୋଜଗାର କରିଛି ।

ମାଧ, ମାଧ, ଉଠ ଦେଖ କେତେ ଟଙ୍କା ଆଣିଛି । ତୁ ପୁଳାଏ ନେ ମଦ ପିଇବୁ ।

ଛିଣ୍ଡା ବ୍ଲାଉଜ ଭିତରୁ କେତେ ଗୁଡାଏ ଦୁଇଟଙ୍କିଆ ନୋଟ ବାହାର କରି ଚନ୍ଦ୍ରାବତୀ ଉପରକୁ ଫୋପାଡ଼ିଲା ରୂପା ।

*0*

# ତପସ୍ୱିନୀ

ସେଦିନ ଥିଲା 'ଇତିଶ୍ରୀ ଅନାଥାଶ୍ରମ'ର ପ୍ରତିଷ୍ଠାତ୍ରୀ ଇତିଶ୍ରୀ ଚୌଧୁରୀଙ୍କର ବିୟୋଗରେ ଶୋକସଭା । ଅନାଥାଶ୍ରମର ଶହ ଶହ ଆଶ୍ରିତଙ୍କ ମନରେ ଖେଳି ଯାଇଥିଲା ଗଭୀର ଶୋକର ଛାୟା । ଶୋକସଭାରେ ଅନାଥାଶ୍ରମର ସମସ୍ତ ଆଶ୍ରିତମାନେ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରିଥିଲେ । ଜଣେ ସାମ୍ବାଦିକ ହିସାବରେ ମୁଁ ମଧ୍ୟ ଯାଇଥିଲି । ଅନାଥାଶ୍ରମର ପରିଚାଳିକା ମୋତେ ଇତିଶ୍ରୀ ଚୌଧୁରୀଙ୍କ ଏକ ଡାଏରୀ ପ୍ରଦାନ କରିଥିଲେ । ସେଇ ଦୀର୍ଘଶ୍ୱାସର ଅସରା ବର୍ଷାରେ ଧୋଇହୋଇ ଯାଇଥିବା ଅତୀତର ଅମୃଲିପି, ଆଜିର ଏହି ଗଳ୍ପର କଥାବସ୍ତୁ ।

ଇତିଶ୍ରୀ ଚୌଧୁରୀ ଥିଲା ରାୟ ବାହାଦୁର ଯଶୋବନ୍ତ ଚୌଧୁରୀଙ୍କର ଏକମାତ୍ର ଅଲିଅଳି କନ୍ୟା । ପିଲାଦିନରୁ ମା' ତାର ଆରପାରିକୁ ଚାଲିଯାଇଥିଲେ । ଅନେକ ଚିନ୍ତାକ୍ଲିଷ୍ଟ ମନନେଇ ଚୌଧୁରୀ ଯଶୋବନ୍ତଙ୍କର ଅକାଳ ମୃତ୍ୟୁ ହୁଏ ହୃଦରୋଗର ଆକ୍ରାନ୍ତରେ— ଇତିଶ୍ରୀକୁ ଏକାକି ଛାଡିଦେଇ ।

ମାମୁଁଙ୍କର ଦୟା ଓ କରୁଣାରୁ ମାଟ୍ରିକ ପାସକରେ ଇତିଶ୍ରୀ । ଓଡିଶାର ପ୍ରଥମ ଦଶଜଣଙ୍କ ମଧ୍ୟରୁ ଇତିଶ୍ରୀ ବୃତ୍ତିପାଏ । ବୃତ୍ତି ଟଙ୍କାରେ ଇତିଶ୍ରୀ ଟ୍ରେନିଂ କଲେଜରେ ନାମ ଲେଖାଏ—ନିଜର ଭବିଷ୍ୟତ ପାଇଁ । ଇତିଶ୍ରୀର ରୂପ ଲାବଣ୍ୟରେ ଅନେକ ପ୍ରଜାପତି ତାର ଚାରିପାଖରେ ଉଡି ବୁଲିଲେ କେତେକ ମଧ୍ୟ ଖୋଲାଖୋଲି ପ୍ରେମଭିକ୍ଷା କଲେ । ଏପରିକି ଅଧ୍ୟାପକମାନେ ମଧ୍ୟ ସେଥିରୁ ବାଦ ଗଲେନି । ତା'ପରେ ଚାଲିଲା ଅବିରତ ଭାବେ ଶିକାର ଖେଳ । ହେଲେ ଇତିଶ୍ରୀ କାହାର ଶିକାର ହୋଇନଥିଲା ।

ଟ୍ରେନିଂ ପରେ ସୁଦୂର ବ୍ରହ୍ମପୁରରେ ଆରମ୍ଭ ହେଲା ଇତିଶ୍ରୀଙ୍କ ଚାକିରୀ ଜୀବନ । ବିଭାଗୀୟ ମନ୍ତ୍ରୀଙ୍କୁ ଧରାଧରି କରି ଅନେକ ଧାଁ ଧପଡ଼ ପରେ ସେ ପାଇଥିଲା ଏ ନର୍ସ ଚାକିରୀ ।

କ୍ରୈଧ୍ରୁଷ୍ଟ ଯଶୋବନ୍ତଙ୍କର ଯାହା ବ୍ୟାଙ୍କ ବାଲାନସ ଥିଲା ସବୁ ଇନ୍ଦ୍ରଶ୍ରୀ ବ୍ରହ୍ମପୁର ବ୍ୟାଙ୍କରେ ଡିପୋଜିଟ କରିଦେଇଥିଲେ । ଫ୍ଲୋରେନସ ନାଇଟିଙ୍ଗେଲ-ପରି ଇନ୍ଦ୍ରଶ୍ରୀ ଚିରକୁମାରୀ ରହି ସମାଜ ସେବା କରିବାପାଇଁ ସ୍ଥିର କଲେ । ଡାକ୍ତରଖାନାରେ ସମସ୍ତ କର୍ମଚାରୀ ମାନଙ୍କର ପ୍ରଲୋଭନ ଏଡ଼ାଇବାକୁ ସକ୍ଷମ ହୋଇଥିଲ ଇନ୍ଦ୍ରଶ୍ରୀ ।

ସେଦିନ ଥିଲା ରବିବାର । ଦେଶରେ ଜାରି ହୋଇଥିଲା ଜରୁରୀ-କାଳୀନ ପରିସ୍ଥିତି । ମନ୍ତ୍ରୀ, ପୋଲିସବାଲାଙ୍କ ଅନ୍ୟାୟ ଅତ୍ୟାଚାର ଦିନକୁ ଦିନ ବଢ଼ି ଚାଲିଥିଲା । ବ୍ରହ୍ମପୁରକୁ ଆସୁଛନ୍ତି ଜଣେମନ୍ତ୍ରୀ । ଯାହାଙ୍କ ପାଇଁ ରାସ୍ତାଘାଟ ଥିଲା ପୁରା ଭିଡ । ସହରର ପ୍ରତ୍ୟେକ ଛକରେ ତିଆରି ହୋଇଥିଲା ମଣ୍ଡପ । ଡାକ୍ତରଖାନା ଖୁବ ଶିଘ୍ର ବନ୍ଦ ହୋଇଗଲା । ଇନ୍ଦ୍ରଶ୍ରୀ ଫେରିଆସିଲେ ବସାକୁ ।

ଇନ୍ଦ୍ରଶ୍ରୀ ଶୋଇଛି । ଭାବୁଛି ତାର ବିଗତ ଦିନର କରୁଣ କାହାଣୀ । ହଠାତ୍ କବାଟରେ ଠକ୍ ଠକ୍ ଆଘାତ ହେବାର ଶୁଣି ଉଠିପଡିଲା ଇନ୍ଦ୍ରଶ୍ରୀ । ଲାଇଟ୍‌ଟା ଦେଲା । ହାତ ଘଡ଼ିକୁ ଚାହିଁଲା । ସମୟ ରାତି ବାରଟା । ଇନ୍ଦ୍ରଶ୍ରୀ ଭାବିଲା ଏତେ ରାତିରେ ପୁଣି କିଏ ? କେହି ତା'ର ଡାକ୍ତରକୁ ନେବାପାଇଁ ଆସି ନାହାଁନ୍ତି ତ ? ଖୁବ୍ ଦମ୍ଭରେ କବାଟଟା ଖୋଲିଦେଲା ଇନ୍ଦ୍ରଶ୍ରୀ ।

"କ୍ଷମା କରିବେ ଆଜ୍ଞା ! ମୁଁ ମନ୍ତ୍ରୀଙ୍କର ଜଣେ ଲୋକ । ମନ୍ତ୍ରୀ ମହୋଦୟ ଭାଷଣ ଦେଇ ସାରିଲା ପରେ ଟିକିଏ ଅସୁସ୍ଥ ହୋଇ ପଡିଛନ୍ତି । ଆପଣଙ୍କ ସାହାଯ୍ୟ ନିହାତି ଦରକାର । ସକାଳ ହେଲେ ଡାକ୍ତରବାବୁ ଆସିବେ ।

ଇନ୍ଦ୍ରଶ୍ରୀ ଦେଖିଲେ—ଘର ସାମନାରେ ଠିଆ ହୋଇଛି, ମନ୍ତ୍ରୀଙ୍କର ସରକାରୀ କାର୍ । ମନରେ ଭୟଟା ତା'ର ଆସ୍ତେ ଆସ୍ତେ ଦୂରେଇ ଗଲା । ଯିବାକୁ ଇଚ୍ଛା ନଥିଲେ ସୁଦ୍ଧା ସେତେବେଳେ ମନ୍ତ୍ରୀଅସୁସ୍ଥ ଯିବାକୁ ବାଧ୍ୟହେଲା ଇନ୍ଦ୍ରଶ୍ରୀ । ନିଜକୁ ଖୁବ୍‌ଶିଘ୍ର ସଜାଡିନେଲା, ତା'ପରେ କାରରେ ଗଲା ମନ୍ତ୍ରୀଙ୍କ ବାଙ୍ଗଲୋକୁ । ମନ୍ତ୍ରୀ ମହୋଦୟ ସେତେବେଳେ ଅସହାୟ ଅବସ୍ଥାରେ ବୋଧ-ହୁଏ ଶୋଇଯାଇ ଥିଲେ । ଅତି ଆପଣାର କରି ଇନ୍ଦ୍ରଶ୍ରୀକୁ ତା'ର ଭଲମନ୍ଦ

ଖବର ପଢ଼ୁଥିଲେ ମନ୍ତ୍ରୀ ମହୋଦୟଙ୍କୁ ନିଜରଦୁଃଖ ଜଣାଇବାକୁ ଯେତେବେଳେ ଶହ ଶହ ଲୋକଙ୍କ ଭିଡ଼, ସେତେବେଳେ ମନ୍ତ୍ରୀ ଇତିଶ୍ରୀର ଦୁଃଖ ଶୁଣିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । ଡର ଡର ହୋଇ ମୂଳରୁ ଶେଷଯାଏ ସବୁ ଘଟଣା କହିଲା ଇତିଶ୍ରୀ । ଆଉ ପାଇଲା ମଧ୍ୟ ମନ୍ତ୍ରୀଙ୍କଠାରୁ ସମବେଦନା ।

ରାତିଟା ଆସ୍ତେ ଆସ୍ତେ ବଢ଼ି ଚାଲିଥିଲା । ମନ୍ତ୍ରୀଙ୍କର ଜଳନ୍ତା ଆଖିରୁ କାମନାର ତାରକା ଚକ୍ ଚକ୍ କରୁଥିଲା । ଇତିଶ୍ରୀକୁ ଭିଡ଼ି ଧରିଲେ ନିବିଡ଼ ଆଲିଙ୍ଗନରେ । ଇତିଶ୍ରୀକୁ ସହସ୍ର ସର୍ପ ଯେପରି ଦଂଶନ କରୁଥିଲେ । ତା'ର ମନେହେଉଥିଲା ବାଙ୍ଗଲୋଟା ଯେପରି ଘୂରୁଛି, ଘରଟା ତଳକୁ ଭୁସୁଡ଼ିପଡ଼ୁଛି ତା'ର ଅନୁଭବ ଶକ୍ତି ଆସ୍ତେ ଆସ୍ତେ ଲୋପପାଇ ଆସୁଥିଲା । ବିବେକାନନ୍ଦଙ୍କ ହାତ ଛନ୍ଦା ଭଳି ମନ୍ତ୍ରୀ ମହାଶୟଙ୍କ ବାହୁବେଷ୍ଟନୀ ଭିତରେ ଥାଇ ଇତିଶ୍ରୀ ଭୋଗୁଥିଲା ଅକଥନୀୟ ଯନ୍ତ୍ରଣା ।

ଇତିଶ୍ରୀ ଭାବୁଥିଲା ଏ ଅସଭ୍ୟ ସମାଜର ପ୍ରତି ଶିରାପ୍ରଶିରାରେ ଚାଲିଛି ଦୂଷିତ ରକ୍ତ । ଦିନରେ ଅନ୍ଧହୋଇ ଭିକ ମାଗୁଥିବା ଲୋକ ମଧ୍ୟ ରାତିରେ ପ୍ରେକ୍ଷାଳୟର ଆଗରେ ବସି ଶସ୍ତା ସିନେମା ଦେଖିପାରେ । ତାଭଳି କେତେଟା ସତୀ ନାରୀଙ୍କର ରାତିରେ ଦେହ ଦେଇ ଦିନରେ ମଧ୍ୟ ମନ୍ଦିରରେ ପ୍ରବେଶ କରିପାରେ । ଆଉ ଏହିଭଳି ମିଥ୍ୟାବାଦୀ ଶଠ ମନ୍ତ୍ରୀମାନେ ମଧ୍ୟ ଦିନରେ ନିଶା ନିବାରଣ ବିରୁଦ୍ଧରେ ଓଜସ୍ୱୀ ବକ୍ତୃତା ଦେଇ ରାତିରେ ମଦ୍ୟପାନ କରି ତା' ପରି ଅବଳାର ବିଭବ ଲୁଣ୍ଠନ କରନ୍ତି ।

ଇତିଶ୍ରୀ ମନ୍ତ୍ରୀଙ୍କ ବାହୁ ବନ୍ଧନରୁ ମୁକୁଳିବାକୁ ଚେଷ୍ଟାକରି ମୁକୁଳି ପାରୁ ନଥିଲା । ତାର ସମସ୍ତ ବଳ ଯେପରି ଆସ୍ତେ ଆସ୍ତେ କୁଆଡ଼େ ଚାଲି-ଯାଉଥିଲା । ଆଉ ତାକୁ ବେଶୀ ଭୟ ଲାଗୁଥିଲା । ଗଭୀର ରାତିରନିର୍ଜନ କୋଠରୀରେ ଜବାରଙ୍ଗର ମଦ୍ୟପ ଆଖିରେ ଅଶ୍ଳୀଳ ଦୃଷ୍ଟି ଓ ପିଶାଚର ହସ ।

"ଆଜିର ପ୍ରେମ, ବଜାରର ପରିବା ପରି ଖୁବ ଶସ୍ତା । ନାରୀର ସୌନ୍ଦର୍ଯ୍ୟ ଓ ପୁରୁଷର ଐଶ୍ୱର୍ଯ୍ୟ ଥିଲେ ସେଠି ବେଶ କିଣାବିକା କରିହୁଏ । "ଇତିଶ୍ରୀ" ମନ୍ତ୍ରୀ ଖୁବ୍ ଚଡ଼ା ଗଳାରେ କହିଚାଲିଥିଲେ । ସେଦିନ ଇତିଶ୍ରୀର

ମନେହେଉଥିଲା ତା ମନର ନିବୁଜ କୋଠରିର ଦ୍ୱାର ତା ଅଜାଣତରେ ଖୋଲି ଯାଇଛି—ତା ନଷିଦ୍ଧ ଇଲାକାରେ କିଏ ଅନୁପ୍ରବେଶ କରି ତା ଚରି-ତ୍ରକୁ ବିଚନ୍ନ କରୁଛି । ରାଜଦାଣ୍ଡରେ ଢ଼ାଙ୍କବାଜ ଯନ୍ତ୍ରଧରି କିଏ ଯେପରି ଚିତ୍କାର କରି ଡାକୁଛି—ଇତିଶ୍ରୀ ! ତୁମେ ଅପଣ୍ଡା ! ତୁମର ସତୀତ୍ୱ ଆଜିଠାରୁ ଲୁଣ୍ଠିତ ହୋଇଯାଇଛି । ତୁମେ ବହୁ ଅଶ୍ଳୀଳନାଟକର କଳଙ୍କିତ ନାୟିକା ।

\+ \+ \+ \+

ଅନେକ ସମୟ ମନ୍ତ୍ରୀଙ୍କ ବାହୁ ବେଷ୍ଟନୀରେ ଆବଦ୍ଧ ରହି ନିଜକୁ ଖୁବ୍ ଦୁର୍ବଳ ମନେକରି ତା ପରଦିନ ଛୁଟିନେଇ ସେ ଶୋଇଯାଇଥିଲା । ଚକ୍ଷୁରୁ ଗଡ଼ି ଯାଇଥିଲା କେଇବୁନ୍ଦା ଲୁହ । ଶ୍ରାବଣୀ ଆଖିରେ ତାର ଲୁହର ଲହଡ଼ି ଭାଙ୍ଗୁଥିଲା । ସେ ଭାବି ଚାଲିଥିଲା—ସତେ ଅବା ସେ ଅହଲ୍ୟା ! ଶ୍ରୀରାମ ଙ୍କ ପାଦସ୍ପର୍ଶରେ ପାଷାଣୀ ଅହଲ୍ୟା ଆଜି ଶାପମୁକ୍ତ ହୋଇଛି ।

--ବାହାରରୁ ଝଲକାଏ ପବନ ଆସି ନାଇଟିଙ୍ଗେଲ୍‌ଙ୍କ ଫଟୋଟି ଭାଙ୍ଗି ଚୂର୍ ମାର୍ ହୋଇଗଲା ।

—ଠିକ୍ ସାତଦିନ ପରେ ମନ୍ତ୍ରୀଙ୍କ ଯୋଗୁଁ ବ୍ରହ୍ମପୁରରୁ ଭୁବନେଶ୍ୱରକୁ ଇତିଶ୍ରୀର ବଦଳିଅର୍ଡ଼ର ଆସିଗଲା । ଇତିଶ୍ରୀ ବ୍ରହ୍ମପୁରରୁ ବିଦାୟ ନେଇଆସିଲା ସମୟରେ ସତେ ଯେପରି ଡ଼ାକ୍ତରଖାନାର ସମସ୍ତ କର୍ମଚାରୀ ତାକୁ ଭେକିଲା ଆଖିରେ ଚାହିଁଥିଲେ ।

× × ×

ଇତିଶ୍ରୀ ଆଶ୍ଚର୍ଯ୍ୟ ହୋଇଥିଲା—ମନ୍ତ୍ରୀଙ୍କ କ୍ୱାର୍ଟର ପଛକୁ ଏକ ସ୍ୱତନ୍ତ୍ର କ୍ୱାର୍ଟର ତାକୁ ମିଳିଲା । ଗୋଟିଏ ଛୋଟିଆ ଘର ବ୍ରହ୍ମପୁରର ପ୍ରତ୍ୟେକ ଗଳି କନ୍ଦିରେ ଇତିଶ୍ରୀ ଖୋଜି ଖୋଜି ପାଉ ନ ଥିଲା । ଅଥଚ ଏଠି ଏକ ସୁରୁଚିପୂର୍ଣ୍ଣ କୋଠା । ରହିବାର ଠିକ୍ ଦୁଇଦିନ ପରେ ମନ୍ତ୍ରୀ ମହାଶୟଙ୍କ ପ୍ରାଇଭେଟ୍ ସେକ୍ରେଟାରୁ ଆଉ କେତେକ ଉଚ୍ଚପଦସ୍ଥ ଅଧସ୍ତନ କର୍ମଚାରୀଙ୍କର ଅବାଧ ପ୍ରବେଶକୁ ଏଡ଼େଇବାକୁ ସକ୍ଷମ ହୋଇପାରିଥିଲା ଇତିଶ୍ରୀ । ଯାହା-ହେଉ, ଇତିଶ୍ରୀ ବେଶି ଖୁସି ହେଉଥିଲା ଯେ ଏଭଳି କ୍ୱାର୍ଟରଟିଏ ମନ୍ତ୍ରୀ ମହୋ-ଦୟଙ୍କ ଚେଷ୍ଟାରୁ ମିଳି ଯାଇଛି ।

ଇତିଶ୍ରୀ ମନ୍ତ୍ରୀ ମହୋଦୟଙ୍କର ଖୁବ୍ ନିଜର ଲୋକ ବୋଲି ଡ଼ାକ୍ତରଖାନାର ବେହେରା ଚପରାଶି ଠାରୁ ଆରମ୍ଭକରି ଡ଼ାକ୍ତର, ହାଉସ ସର୍ଜନ ପର୍ଯ୍ୟନ୍ତ ସମସ୍ତଙ୍କର ତାଙ୍କପ୍ରତି ଏକ ପ୍ରକାର ଭୟମିଶ୍ରିତ ସମ୍ମାନ ଥାଏ । କେତେ କଣ୍ଟ୍ରାକ୍ଟର ବିଲ ସୁପାରିଶ୍, ଅଫିସର ବଦଳି ପାଇଁ, ମନ୍ତ୍ରୀଙ୍କର ସହଯୋଗ ଲୋଡ଼ିବାକୁ ହେଲେ ସେ ଥିଲେ ତାର ଏକମାତ୍ର ମାଧ୍ୟମ ।

ମନ୍ତ୍ରୀଙ୍କ ପତ୍ନୀ ଜଣେ ଧର୍ମ ପରାୟଣ । ଗାଁର ଜମିବାଡ଼ି ଓ ଶାଶୁ ଶଶୁର ସେବାପାଇଁ ଗାଁରେ ଥାନ୍ତି । ଏଣୁ ମନ୍ତ୍ରୀଙ୍କୁ କିଛି ଅସୁବିଧା ହୁଏନି କିଛି ଦିନପରେ ଇତିଶ୍ରୀ ମନ୍ତ୍ରୀଙ୍କ ଘରେ ମଧ୍ୟ ସମୟେ ସମୟେ ରହିଥାନ୍ତି । ସମୟର ରଥଚକ ଘୂରିଚାଲିଛି, ଏହି ଚକ ତଳେ ଅନେକ ନରନାରୀ ନିଜର ଅସାବଧାନତା ଯୋଗୁଁ ନିଜର ପ୍ରାଣବଳି ଦେଇଥାନ୍ତି । ଭାଗ୍ୟର ବିଡ଼ମ୍ବନା ଘଟେ । ଦେଶରେ ପୁଣି ନିର୍ବାଚନ ଆସିଲା ସେହି ନିର୍ବାଚନ-ରେ ମନ୍ତ୍ରୀ ନିଜର ନିକଟତମ ପ୍ରତିଦ୍ୱନ୍ଦୀଙ୍କଠାରୁ ବହୁ ଭୋଟରେ ପରାଜିତ ହେଲେ । ସରକାର ଗଲା । ଅନ୍ୟ ଏକ ଦଳ ସରକାର ଗଢିଲେ । ମନ୍ତ୍ରୀ ଆଉ ଭୁବନେଶ୍ୱର ରାଜପଥ, ରାଜଭବନ, ରାଜଉଆସରେ ଦେଖିବାକୁ ମିଳିଲେନି । ବିଭିନ୍ନ ପ୍ରକାର ତଳିଆ କର୍ମଚାରୀଙ୍କ ଅଭିଯୋଗରେ ଇତିଶ୍ରୀ ସୁଦୂର କୋରାପୁଟକୁ ଦରବର ଘଣ୍ଟିଆ ବଦଳି ଆଦେଶଧରି କୋରାପୁଟ ଚାଲିଗଲେ ।

ଏକାକିନୀ ଇତିଶ୍ରୀ ସାଥିହରା ଜୀବନରେ ଜଣେ ମନ୍ତ୍ରୀଙ୍କୁ କିଛିକାଳ ଅଙ୍କ ବାସିନୀ ହେବାପରେ କୋରାପୁଟ ଅଞ୍ଚଳର ଆଦିବାସୀ, କନ୍ଧ, ସାନ୍ତାଳ ମାନଙ୍କ ଗହଣରେ ରହିବା ଏକ ପ୍ରକାର କାରାଗାରବନ୍ଦୀ ଅନୁଭବ କରୁ-ଥିଲେ । ସମୟର ହାତ ଓ ଭାଗ୍ୟ ଭଗବାନଙ୍କ ଉପରେ ଦୋଷ ଲଦି ଦେଇ ନିଜ ଚିନ୍ତାମଗ୍ନ ମସ୍ତିଷ୍କ ଓ କ୍ଷତ ଯୌବନକୁ ଟିକିଏ ସାନ୍ତ୍ୱନା ଦେଉଥାଏ ।

ନୂତନ ମନ୍ତ୍ରୀଙ୍କ କୋରାପୁଟ ଆଗମନ ।
ଦଳୀୟ କର୍ମୀଙ୍କ ଆନନ୍ଦ, ସରକାରୀ ଅଫିସରଙ୍କ ବ୍ୟଗ୍ରତା । ରାସ୍ତାଘାଟରେ ତୋରଣ, ହେଲେ·········

ଇନ୍ଦ୍ରଶ୍ରୀ କାନ୍ଦୁଛି

ନା ସେ ଆଜ ଆତ୍ମହତ୍ୟା କରିବ । ସମାଜର ପିଚ୍ଛିଳ ରାଜରାସ୍ତାରେ ଚାଲିବାର ଶକ୍ତି ତାର ଆଜି ନାହିଁ ।

ରାତି ନିଶିଦ୍ଧ ପ୍ରହରରେ—

ଇନ୍ଦ୍ରଶ୍ରୀ ଝରକା କବାଟ ବନ୍ଦକରି ଏନଡ୍ରାନ ଶିଶିଟି ହାତରେଧରି ଥରେ ଅଇନା ସନ୍ମୁଖରେ ଶେଷଥର ପାଇଁ ନିଜର ନଗ୍ନଶରୀରକୁ ଟିକିନିଖି ପରଖିନେଲା ।

ହଠାତ୍ କବାଟରେ କାହାର ଠକ୍ ଠକ୍ ଆବାଜ ଶୁଣିଲା ।

ଝରକାର ଆଢୁଆଳରେ ଦେଖିବାକୁ ପାଇଲା ରାସ୍ତା ଉପରେ ଏକ ସରକାରୀ ଗାଡ଼ି, ତରତରରେ ଶାଢ଼ୀ ପିନ୍ଧି ରଜନୀଗନ୍ଧାରେ ସଜ୍ଜିତ ହୋଇ, କବାଟ ଖୋଲିଲା । କାରଚାଳକ ଜଣକ ଚାଲିବା ପୂର୍ବରୁ ସେ ଧାଇଁଯାଇ କାରରେ ଆଗସିଟରେ ବସିଲା ।

କାର୍ ଚାଲିଲା କୌଣସି ଏକ ଯୌନକ୍ଷୁଧା ମନ୍ତ୍ରୀଙ୍କ ବଙ୍ଗ୍ଲୋକୁ

ଇନ୍ଦ୍ରଶ୍ରୀ ନାରୀ, ଝରାଫୁଲ । ଝଡ଼ି ଯିବା ତାର ଧର୍ମ । ହେଲେ ସେ ଯେତେବେଳେ ବଣମଲ୍ଲୀଥିଲା । ଯୌବନର ତରଙ୍ଗରେ ତାର ଅଙ୍ଗ ପ୍ରତ୍ୟଙ୍ଗ ଦୋଳାୟିତ ହେଉଥିଲା । ବହୁ ଭ୍ରମର ଧାଇଁଥିଲେ ହେଲେ ବୟସର ସ୍ରୋତରେ ସମସ୍ତେ ଭାସିଗଲେ । ଇନ୍ଦ୍ରଶ୍ରୀ ରହିଗଲା କୌଣସି ସାମାନ୍ୟ କାରଣରୁ ନର୍ସ ଚାକିରୀରୁ ସସ୍‌ପେଣ୍ଡ ହେଲା । ସେ ସମସ୍ତଙ୍କୁ ଚାକିରୀ ଖଣ୍ଡିକ ପାଇଁ ଅକୁଳ ନିବେଦନ କଲା । ହେଲେ କେହି ଶୁଣିଲେନି । ଯେଉଁମାନେ ଟିକିଏ ପ୍ରେମ ପାଇଁ ଦ୍ୱାରସ୍ଥ ହୋଇଥିଲେ ସେମାନେ ଆଡ଼ ଆଖିରେ ବି ଚାହିଁଲେନି ।

ଇନ୍ଦ୍ରଶ୍ରୀର ପରିବର୍ତ୍ତନ ଆସିଲା ।

ବ୍ୟାଙ୍କରେ ସଞ୍ଚିତ ଧନ ସୁଧ ମିଶାଇ ଏକ ଅନାଥଶ୍ରମ ପ୍ରତିଷ୍ଠା କଲା । ତାହା ହେଲା ଶହଶହ ଆଶ୍ରିତ ମାନଙ୍କର ବାସସ୍ଥଳୀ । ସେ ହେଲା ଜନନୀ । ଧରିତ୍ରୀ ଦୟାମୟୀ, କରୁଣାମୟୀ ମା'' ।

ବସ୍ କଣ୍ଡକ୍ଟରର ଡାକରେ ମୋ ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ଆଖିରୁ ଲୁହ ପୋଛୁ ପୋଛୁ ବସ୍‌ରୁ ଓହ୍ଲାଇଲି ।

# ପ୍ରେମର ସଂଜ୍ଞା

ପ୍ରଥମରୁ ହିଁ ମୋର ଦୁଇଟି ବିଷୟରେ ସଉକ ରହିଛି । ଗୋଟିଏ ହେଲା ସୁନ୍ଦର ଜୋତା ଓ ଅନ୍ୟଟି ସୁନ୍ଦରୀ ମହିଳା । ମୁଁ ଏତିକି ଜାଣେ ମୋ ଗୋଡ଼ରେ ସୁନ୍ଦର ଜୋତା ହଳେ ନ ଥିଲେ ମତେ ଘରି ଅଡ଼ୁଆ ଅଡ଼ୁଆ ଲାଗେ । ସେହିପରି ଯଦି ଆମ ଘରେ ସୁନ୍ଦରୀ ମହିଳାଟିଏ ବସି ଗପସପ ନହୁଏ ତେବେ ମୋତେ ଚତୁର୍ଦ୍ଦିଗ ଅନ୍ଧକାର ଦିଶେ ।

ଏଇଟା ସେମିତି କିଛି ବଡ଼ କଥା ନୁହେଁ କିନ୍ତୁ ଯାହାକୁ ଯାହା ପସନ୍ଦ ତା'ର କେବଳ ବାଃ ବାଃ କହେ । ଅଥଚ ବହୁତ ଲୋକଙ୍କ ସଉକ ଅନୁଯାୟୀ ତାହା ମିଳି ନ ଥାଏ । ଧରନ୍ତୁ—ଉଡ଼ାଜାହାଜ ଚଢ଼ିବାକୁ ପସନ୍ଦ କରୁଥିବା ଲୋକଟି ବି ଥରୁଟିଏ ଜୀବନରେ ଉଡ଼ାଜାହାଜରେ ବସି ପାରିବାର ସୌଭାଗ୍ୟ ତା ଭାଗ୍ୟରେ ନ ଥାଏ । କେତେକଙ୍କର ଅଙ୍ଗୁଳିରେ ହୀରାମୁଦି ଲଗାଇବାର ସଉକ ଥିଲେ ବି ରୂପାର ମୁଦିଟିଏ ପିନ୍ଧିବାର ସୁଯୋଗ ତାଙ୍କୁ ମିଳି ନ ଥାଏ ।

ଏହାହିଁ ଦୁନିଆଁ । ଏ ଦୁନିଆରେ ଆମେ କ'ଣ ନିଜ ମନଲାଖି ଜିନିଷ ହାସଲ କରିବା ସମ୍ଭବ ହେଉଛି ।

ମଣିଷ ତ ସର୍ବଦା ଆଶାୟୀ । ତାର ଲକ୍ଷ୍ୟ ସ୍ଥଳରେ ନ ପହଞ୍ଚିଲେ ମଧ୍ୟ କେବେ ତା ଚେଷ୍ଟାରେ ପୂର୍ଣ୍ଣଚ୍ଛେଦ ପଡ଼ି ନ ଥାଏ । ମୋ ମନର ଅପଚେଷ୍ଟା ହିଁ ମୋତେ ନେଇଥିଲା ମଦନ ଗୋପାଳ ବାବୁଙ୍କ ପର୍ଯ୍ୟନ୍ତ ।

୫୦ ବର୍ଷ ବୟସ୍କ ଆଗ୍ରହୀ ମଦନ ଗୋପାଳ ସରକାରୀ ଅଫିସର ଜଣେ ଅଣ୍ଡର ସେକ୍ରେଟାରୀ । ମୁଁ ଆଗରୁ ଜାଣିଛି ସେ ଏହି ୨ଟିକୁ ଭଲ ପାଆନ୍ତି । ସୁନ୍ଦର ଜୋତା ଓ ସୁନ୍ଦରୀ ଯୁବତୀଙ୍କୁ ।

ମୁଁ ତାଙ୍କୁ ସାକ୍ଷାତ କରି ମନ କଥା ଖୋଲି କହିଲି ।

ସେ କିଛି ସମୟ ଉପରକୁ ଚାହିଁଲେ । ମୋତେ ଉତ୍ତର ଦେଲେ—

—ତୁମେ ପ୍ରେମ କରିବା ଦରକାର ।

—କ'ଣ ଜୋତାକୁ ?

—ନାଁ । (ସେ ହସିଲେ) ଯେ କୌଣସି ସୁନ୍ଦରୀ ଯୁବତୀଙ୍କୁ ।

—କିନ୍ତୁ ମୋର କ୍ୱାଟର ଆଖପାଖରେ ସେପରି କୌଣସି ସୁନ୍ଦରୀ ଯୁବତୀ ଥିବାର ମୋତେ ଜଣାନାହିଁ ।

—ତମେ ଯାହାକୁ ପ୍ରେମ କରିବ ସେ ଆପେ ଆପେ ସୁନ୍ଦରୀ ହୋଇଯିବ । ସେ ଉତ୍ତର ଦେଲେ ।

ମୁଁ ମନେମନେ ଠିକ୍ କଲି, ଶ୍ରୀଯୁକ୍ତ ମଦନ ଗୋପାଳଙ୍କୁ ମୁଁ ଓସ୍ତାଦ ବୋଲି ମାନନେବି । ପରଦିନ ଜଣେ ମୁସଲମାନ ବନ୍ଧୁଠାରୁ ଶହେ ଟଙ୍କା ଧାର ଆଣି କିଛି ମିଠା, ଆଉ ଫୁଲତୋଡ଼ା ସୁନାଏ ନେଇ ତାଙ୍କ ପାଦତଳେ ଥୋଇଦେଲି ।

ଆଜିଠାରୁ ମୋତେ ପ୍ରେମ କରିବା ଶିଖାଇ ଦିଅନ୍ତୁ ଗୁରୁଦେବ । ସେତେବେଳକୁ ମୁଁ ତାଙ୍କୁ ପ୍ରେମଗୁରୁ ରୂପେ ମାନି ନେଇଥିଲି । ଗୁରୁଦେବ ମୋ ଭେଟି ଗ୍ରହଣ କଲେ । କହିଲେ ବତ୍ସ—ସବୁ କାର୍ଯ୍ୟ ସିଦ୍ଧି ପାଇଁ ବିନା-ଗୁରୁରେ କିଛି ସମ୍ଭବ ନୁହେଁ । ତୁମେ ମୋର ଶିଷ୍ୟତ୍ୱ ଗ୍ରହଣ କରିଛ ।

ସେ ତାଙ୍କର ଅପାର ଦୀକ୍ଷା ପ୍ରଦାନ କରି କହିଲେ ପ୍ରେମ ଏକ ସୂକ୍ଷ୍ମ କାର୍ଯ୍ୟ । ମଟର, ଫିଟର, କମାର କାର୍ଯ୍ୟ ଯେପରି ଗୋଟିଏ ଗୋଟିଏ ବିଦ୍ୟା । ସେହିପରି ପ୍ରେମ ଗୋଟିଏ ବିଦ୍ୟା । ଏହାର ୨ଟି ସୋପାନ ଥାଏ । ଗୋଟିଏ ବିଷୟ ବସ୍ତୁ ପଠନ (ଥିଓରି) ଅନ୍ୟଟି ପ୍ରୟୋଗ (ପ୍ରାକ୍‌ଟିକାଲ୍) ।

ବିଷୟ ବସ୍ତୁକୁ ପ୍ରଥମେ ଶିକ୍ଷାକରି ପରେ ପ୍ରୟୋଗ କଲେ ଏଥିରେ ସଫଳତା ଅର୍ଜନ କରାଯାଇଥାଏ ।

ମୁଁ ତ ସେଇଥି ପାଇଁ ଆସିଛି ଗୁରୁଦେବ । ଆପଣ ମୋତେ ପ୍ରେମର ସଂଜ୍ଞା ବତାଇ ଦିଅନ୍ତୁ । ମୁଁ ଉତ୍ତର ଦେଲି ।

ଗୁରୁଦେବ ଗମ୍ଭୀରହୋଇ କହିଲେ ପ୍ରେମ କରିବାର ୨ଟି ଉପାୟ ଅଛି । ପ୍ରଥମତଃ ଟଙ୍କା । ଯଦି ତୁମ ପାଖରେ ଅତ୍ୟଧିକ ଟଙ୍କା ଥାଏ ତାର ବିନଯୋଗ କଲେ ସୁନ୍ଦରୀ ତରୁଣୀମାନେ ଆପେ ଆପେ ତୁମ ଅଙ୍କୁଆରକୁ ଆସିଯିବେ । କାରଣ ନାରୀମାନେ ଅତ୍ୟନ୍ତ ଲଜ୍ଜାଶୀଳା । ସେମାନେ ସୁନ୍ଦର ସାଜସଜ୍ଜା, ଶାଢ଼ୀ, ଗାଡ଼, ହାର, ଲକେଟ୍, ସୁନା ଓ ରୂପାର ତାରକସି କାମ ଆଦି ବିନମୟରେ ସେମାନଙ୍କୁ ଆପେ ଆପେ ଆପଣାର କରିଦେବ ।

ମୁଁ ନିରାଶ ହେଲି । ମୋ ପାଖରେ ଏତେ ଟଙ୍କା କାହିଁ ? ପତ୍ର-ପତ୍ରିକାରେ ଲେଖାଲେଖି କରି ମାସକୁ ଶହେ ଦୁଇଶହ ଯାହା ରୋଜଗାରଟି ହୋଇଥାଏ । ଏହା ବ୍ୟତୀତ ଏକ ସମ୍ବାଦପତ୍ରର ସାମ୍ବାଦିକ ସେ ବାଟରେ ମାସକୁ ଶହେ କୋଡ଼ିଏ ଟଙ୍କା ମିଳେ । ଘରେ ବୁଢ଼ୀ ମା, ତିନୋଟି ବିବାହ ଯୋଗ୍ୟା ଭଉଣୀ; ଦୁଇଟି ବିଧବା ମାଉସୀ ପୁଣି ସେମାନଙ୍କ ପିଲାପିଲି । ଠିକ୍ କରିପାରୁନ । ଶାଢ଼ୀଟିଏ କିଣିବାକୁ ତ ମୋ ପାଖରେ ପଇସା ନାହିଁ । ଏସବୁ ଶୁଣି ଗୁରୁଦେବ ମୋ ମନକଥା ବୁଝିଲେ ।

ସେ ଗମ୍ଭୀର ହୋଇ ପୁଣି ୨ୟ ପନ୍ଥାଟି ବତାଇଦେଲେ । ଏହାକୁ କହନ୍ତି ପ୍ରେମର ୨ୟ ଉପାୟ । ଏଥିରେ ଟିକିଏ ସତର୍କତା ଅବଲମ୍ବନ କରି-ବାକୁ ପଡ଼େ । ଖର୍ଚ୍ଚ କିନ୍ତୁ ବହୁତ କମ୍ ।

ମୁଁ ଖୁସି ହୋଇଗଲି । ମୁଁ ସବୁ କରିବାକୁ ପ୍ରସ୍ତୁତଅଛି ଗୁରୁଦେବ ଆପଣ ଉପାୟ ବତାଇ ଦିଅନ୍ତୁ ।

—ସୁନ୍ଦରୀ ଯୁବତୀମାନେ ସୁନ୍ଦର ସ୍ୱାସ୍ଥ୍ୟ ପୁରୁଷର ମିଠାମିଠା କଥା ବାଣୀରେ ମଧ୍ୟ ବଶତା ସ୍ୱୀକାର କରନ୍ତି । ମୁଁ ଦେଖୁଛି ତୁମ ମୁହଁରେ ଦାଗ

ମୁଣ୍ଡରେ ବସନ୍ତର ଗନ୍ଧ, ଚେପ୍ଟା ନାକ, ଏ ସବୁକୁ ନେଇଁ ତୁମେ ପ୍ରେମ କରିବାକୁ ହେଲେ କଠୋର ଅଧ୍ୟବସାୟ କରିବାକୁ ପଡ଼ିବ ।

ମନରେ ସାହାସ ବାନ୍ଧିଲି, କହିଲି— ଆପଣ ମୋତେ ଉପାୟ ବତାନ୍ତୁ ଗୁରୁଦେବ । କେଉଁ ଝିଅ ସହିତ କପରି ପ୍ରେମକରିବି ଆପଣକୁହନ୍ତୁ । ଗୁରୁଦେବ କିଛିକ୍ଷଣ ପୁଣି ଉପରକୁ ଚାହିଁଲେ । ହଠାତ ଉତ୍‌ଫୁଲ୍ଲିତ ହୋଇ ଉଠିଲେ— ଉପାୟ ମିଳିଗଲା ଶିଷ୍ୟ । ତମେ ପ୍ରଥମେ ମିସ୍ ବିମଳାଙ୍କ ସହ ପ୍ରେମକର ।

ସେ କଲେଜରେ ପଢେ । ଅତରକୁ ବହୁତ ପସନ୍ଦକରେ । ଭଲ ଅତରପାଇଁ ସେ ଜୀବନଦେଇଦିଏ । ତୁମେ ଗୋଟିଏ ଇଭିନିଂ ଇନ୍ ପ୍ୟାରିସ ଅତର ଶିଶି ଆଣ । ବିମଳା ଯେଉଁ ବାଟରେ ପ୍ରତିଦିନ କଲେଜ ଯାଏ ସେହି ବାଟରେ ରୁମାଲରେ ଅତରବୋଳ ରାସ୍ତାରେ ପକାଇଦିଅ । ସେ ଗଲାବେଳେ ରୁମାଲ ପାଇବା ସେତେବେଳେ ତୁମେ ଆଗେ ଆଗେ ଯାଉଥିବ । ତୁମ ରୁମାଲଟି ସେ ଉଠାଇନେବ । ସେଣ୍ଟ୍‌ର ସୁଗନ୍ଧ ସେ ନିଶ୍ଚୟ ଗ୍ରହଣକରିବ । ସେ ତୁମକୁ ଡାକିବ ଏବଂ ପଚାରିବ କ'ଣ ଇଭିନିଂ ଇନ୍ ପ୍ୟାରିସ୍ ଆପଣଙ୍କର ଚଏସ । ଆପାତତଃ ଅତରଉପରେ କିଛିଟା ଆଲୋଚନାହେବ ତାପରେ ରୁମାଲର ସୁଗନ୍ଧୀଟାଇ ହୃଦୟକୁ ସ୍ପର୍ଶକରିବ । ସେଇଠାରୁ ପ୍ରେମର ସୃଷ୍ଟିହେବ ।

ମୁଁ ଗୁରୁଦେବଙ୍କ ପାଦଧରି ପକେଇଲି । ବାଃ ବଢ଼ିଆ ଉପାୟଟିଏ ବତାଇଦେଲେ ଗୁରୁଦେବ ।

କାଲି ସକାଳୁ ପ୍ରେମ କରିବାର ପ୍ରଥମ ପରୀକ୍ଷା । ଏହା ପରବର୍ତ୍ତୀ ଉପାୟ ଘଟଣା ଘଟିବାପରେ ଗୁରୁଦେବ ବତାଇଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ପରଦିନ ଗୁରୁଙ୍କ ପାଖରେ ପହଞ୍ଚିଲା ବେଳକୁ ଦୁଃଖରେ ମୁଁ ଭାଙ୍ଗି ପଡ଼ିଥିଲି । ଦୁଆର ମୁହଁରୁ ଗୁରୁଦେବ ମୋ ବିଷର୍ଣ୍ଣ ବଦନ ଦେଖି ପ୍ରଶ୍ନକଲେ କ'ଣ ହେଲା । ହସିବାକୁ ଭୁଲିଯାଇଥିଲ ନା କ'ଣ ? ନା - ମୁଁ ତ ହସିଲି ।

କିନ୍ତୁ ମିସ୍ କମଳା ମୋ ହସଦେଖି ସେ ଗମ୍ଭୀର ହୋଇଯାଇ ମୁହମୋଡ଼ି ଚାଲିଗଲେ । ମୁଁ ତ ରୁମାଲ ପକାଇଲି । ସେ ବି ତାକୁ ଉଠାଇଲେ । ମୁଁ ପଛକୁ ଚାହିଁ ଦେଖିଲି ସେ ମୋ ରୁମାଲକୁ ନର୍ଦ୍ଦମାକୁ ଫିଙ୍ଗିଦେଲେ ଓ ମୋତେ ମୂର୍ଖ, ମ୍ଲେଚ୍ଛ, ବଦମାସ କେତେ କ'ଣ ଗାଳିଦେଲେ ।

ଗୁରୁଦେବ ମୋ କଥା ଶୁଣି ବିସ୍ମିତ ହେଲେ । ମୁଁ କହିଲି, ମୋର ଗୋଟିଏ ବଦଭ୍ୟାସ ପ୍ରବଳ ସର୍ଦ୍ଦି ହୋଇ ଥିବାରୁ ସେହି ରୁମାଲରେ ସିଙ୍ଘାଣି ପୋଛିଥିଲି । ମିସ୍ କମଳା ରୁମାଲ ଧରିବାବେଳେ ତାଙ୍କ ହାତରେ ସେ ସବୁ ଲାଗିଗଲା, ସେ ରାଗିଗଲେ ।

ତମଦ୍ୱାରା ପ୍ରେମ ହୋଇପାରିବନି । ଜୀବନସାରା ବି ତୁମେ ପ୍ରେମକରି ପାରିବନାହିଁ । ଗୁରୁଦେବ ରାଗିଯାଇ କହିଲେ ।

ମୁଁ ମଦନ ଗୋପାଳଙ୍କ ଗୋଡ଼ଧରି ପକେଇଲି । ମୋତେ ଏଥର କ୍ଷମା ଦିଅନ୍ତୁ । ପ୍ରେମକରିବା ଶିଖେଇ ଦିଅନ୍ତୁ । ମୋର ଏଥର ଭୁଲ ହୋଇ ଯାଇଛି ।

ଏହାପରେ ଗୋପାଳଙ୍କ ପ୍ରେମରତୃତୀୟଉପାୟଟି ବତାଇଦେଲେ । ଏହାକୁ କହନ୍ତି ଫ୍ଲାଓ୍ୱାର ଲଭ୍ ଅର୍ଥାତ ଫୁଲ୍ପ୍ରେମ ।

ତୁମେ ଏକାକିନୀ ବସିଥିବା କୌଣସି ଏକ ଯୁବତୀକୁ ବାସ୍ନାଯୁକ୍ତ ଫୁଲଟିଏ ଉପହାର ଦେବ । ଫୁଲଟିଏ ଉପହାର ଦେବାବେଳେ କିଛି ମଧୁର ବାକ୍ୟାଳାପ କରିବ ସତେ ଯେପରି ସେ ଫୁଲଟି ଫୁଟିଥିଲାକେବଳ ସେହି ଯୁବତୀଟି ପାଇଁ । ତା'ପରେ ଆସ୍ତେଆସ୍ତେ କଥାର ମୋଡ଼ ବଦଳାଇ ଫୁଲ, ତମେ ଯୁବତୀ ଓ ଯୁବତୀଟି ଫୁଲକୁ ଓ ତମେ ଯୁବତୀକୁ ଭଲପାଉଛ ବୋଲି କହିବ । ତା'ପରେ ସବୁ ଠିକ ହୋଇଯିବ ।

କି ସୁନ୍ଦରଉପାୟ ବତାଇଲେ ଗୁରୁଦେବ, ଏଥର ନିଶ୍ଚିତସଫଳ ହେବି । କିନ୍ତୁ କେଉଁ ଝିଅସଙ୍ଗେ ପ୍ରେମ କରିବି ?

ଗୁରୁଦେବ ମୋ ପ୍ରଶ୍ନର ଉତ୍ତର ଶୁଣି କହିଲେ···କାହିଁ ରେଲୱେ ଗାର୍ଡ଼ର ଝିଅ ମେରି ଡସୁଜା, ସେତ ଭଲ ଝିଅଟିଏ । ଗଭାରେ ସବୁବେଳେ ଫୁଲଟିଏ ଖୋସିଥାଏ । ଝିଅଟି ସରଳା, ତମେ ଚେଷ୍ଟାକର କାଲି ସନ୍ଧ୍ୟାରେ ମୋତେ କହିବ ।

ତା'ପରଦିନ ସନ୍ଧ୍ୟାରେ ଗେପାଳଙ୍କ ଘରକୁ ଗଲି । ମୋ ହତୋତ୍ସାହ ଦେଖି ସେ ବଚଳିତହୋଇ ପଚାରିଲେ, କଣ ହେଲା ? ଝିଅଟିକୁ କ'ଣ ଏକୁଟିଆ ପାଇଲନି । ହଁ ପାଇବନି କାହିକି ? ସେ ତାଙ୍କ କୋଠା ପଛପଟେ ଏକାକନି ବସିଥିଲା । ସେଠାରେ କାନ୍ଥକୁ ଲଗି ବହୁ ଲମ୍ବା ଲମ୍ବା ଧଳା ସୁନିଆଫୁଲଥିଲା ସେଥିରୁ ଦୁଇଟାଦେଇ କହିଲି, ନରମଫୁଲଟି ସତେ ଯେମିତି ଅନାଇ ରହିଛି ଅନ୍ୟଏକ ଫୁଲକୁ । ସେ ମୋଠାରୁ ଫୁଲନେଇ କହିଲା ଏଗୁଡ଼ାକ ତ ଦୁଦୁରା ଫୁଲ । ଫୁଲକୁ ସେ ଫୋପାଡ଼ ଦେଲା । ମୁଁ ପାହାସକରି ପାଖରେ ବସିଲି । ସେ ମୋଆଡ଼କୁ ଅନାଇଲା । ମୁଁ ଡ଼ରିଗଲି । ମୋ ଦେହେରିକୁ ଥରେ ମୁଣ୍ଡରୁ ଗୋଡଯାଏ ଦେଖିନେଇ କହିଲା । କ'ଣ ଆପଣଙ୍କପେଟ ବ୍ୟଥା ହେଉଛି ।

ମୁଁ ଆଚମ୍ବିତ ହୋଇ ହଁ ଆଜ୍ଞା ଉତ୍ତର ଦେଲି ।

ମୋ ମତରେ ଆପଣ ଶୀଘ୍ର ଡ଼ାକ୍ତରଖାନା ଯାଇ ଔଷଧ ଖାଆନ୍ତୁ ସେ ଉତ୍ତରଦେଲା । ଏତକ କହି ସେ ଯୋରରେ ହସିବାକୁ ଲାଗିଲା । ସତେ ଯେପରି ମୋତେ ତାଚ୍ଛଲ୍ୟ କରି ଏପରି କହିଲା ॥

ମୋ କଥା ଶୁଣି ଗୁରୁଦେବ ରାଗି ପଞ୍ଚମ—ମୋତେ ଧମକ ଦେଲେ ବାହାରି ଯା' ଏଇଠୁ, ତମଦ୍ୱାରା ପ୍ରେମ ହୋଇ ପାରିବନି ।

ନାହିଁ ଗୁରୁଦେବ, ମୋତେ ପ୍ରେମ କରିବା ଶିଖେଇ ଦିଅନ୍ତୁ । ନଚେତ୍ ମୁଁ ମରିଯିବି । ମୁଁ କାନ୍ଦିଲି, ମୋ କାନ୍ଦ ଦେଖି ଗୁରୁଦେବଙ୍କ ମନ ତରଳିଲା ।

ମୋ ଆଖିର ଲୁହ ପୋଛିଦେଇ କହିଲେ—ତୁମକୁ ଏଥର ପ୍ରେମର ୪୯ ଧାରାଟି ବତାଇ ଦେଉଛି । ଏ ସବୁଠାରୁ ଶକ୍ତିଶାଳୀ କୌଶଳ । ସାବଧାନ, ଏଥିରେ ଟିକଏ ଏପଟ ସେପଟ ହେଲେ ମହାବିପଦ ।

ଶକ୍ତିଶାଳୀ ପ୍ରେମର ଧାର ଗୋପାଳଜୀ ବତାଇ କହିଲେ—ତମେ ଯେ କୌଣସି ଝିଅକୁ ପ୍ରେମ କରିବ ପ୍ରଥମେ ଠିକ୍ କରି ଯେଉଁଠାରେ ଏକାକୀ ଦେଖିବ, ତାର ହାତ ଧରି ପକାଇବ । ଯଦି ହାତକୁ ଛୁଆଡ଼ ପକାଏ ତେବେ ତାକୁ ଶକ୍ତକରି ତୁମ ଦୁଇ ବାହୁରେ ନିଜ ଛାତିରେ ଜାବୁଡ଼ି ଧରି । ଏଥିରେ ଯଦି ସେ ପ୍ରତିବାଦ କରି ବଡ଼ ପାଟିରେ ଚିତ୍କାର କରେ ତେବେ ତମେ ତା ଓଠରେ ତମ ଓଠ ମିଳାଅ, ତା ଗାଲରେ ଚୁମା ଦିଅ । ଯଦି ସେଥିରେ ପ୍ରତିବାଦକରେ ତେବେ ତାକୁ ଝୁଙ୍କି ଦେଇ ତଳେ ପକାଇଦିଅ ଏବଂ ତା'ପରେ······ । ବାସ୍ ତମ ପ୍ରେମ ସଫଳ ହେବ । କାରଣ ସବୁ ଯୁବତୀ ପୁରୁଷର ପୌରୁଷତ୍ୱକୁ ହିଁ ଅଧିକ ପସନ୍ଦ କରନ୍ତି ।

ହେ ପାଠକେ କ'ଣ ଆପଣ ଭାବୁଛନ୍ତି । ଏଥିରେ ମୁଁ କୃତକାର୍ଯ୍ୟ ହେଲି । ଏ କାହାଣୀ ଏବେ ମୁଁ ଜେଲରୁ ଲେଖୁଛି ।

ତଥାପି ମୁଁ ଧର୍ଯ୍ୟହରା ହୋଇନି । ୬ ମାସ ଜେଲ୍ ଜୀବନ ପରେ ପୁଣି ଗୁରୁଦେବଙ୍କ ପାଖକୁ ଯାଇ ପ୍ରେମର ପଞ୍ଚମ ଫର୍ମୁଲାଟି ଅବଶ୍ୟ ପଚାରିବି ।



(କୃଷ୍ଣଚନ୍ଦରଙ୍କ ମୂଳ ବଙ୍ଗଳା ଲେଖାର ଅନୁବାଦ)

# ମଣିଷ ଖୋଜୁଛି ମଣିଷ

ଗ୍ରିସ୍ ଦେଶର ସର୍ବ ଶ୍ରେଷ୍ଠ ଦାର୍ଶନିକ ଡାୟୋଜେନସ୍ ଥରେ ଦିନ ଦ୍ୱିପ୍ରହର ସମୟରେ ହାତରେ ଲଣ୍ଠନ ନେଇ ବଜାରକୁ ଆସିଲେ, ଲୋକେ ଯେତେବେଳେ ଏହାର କାରଣ ପଚାରିଲେ ସେ କହିଲେ ମୁଁ ମଣିଷ ଖୋଜୁଛି, ଲୋକେ ଖୁବ୍ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେମାନେ କହିଲେ ଆମେ ସମସ୍ତେତ ମଣିଷ, ପୁଣି ଆପଣ କାହାକୁ ଖୋଜୁଛନ୍ତି ସେ ଖୁବ୍ ରାଗିଯାଇ କହିଲେ ମୋ ସାମ୍ନାରୁ ତମେ ସବୁ ହଟିଯାଅ, ମୋତେ ମଣିଷ ଦରକାର ପଶୁ ନୁହେଁ । କିଛିଦିନ ତଳେ ସ୍ୱାମୀବିବେକାନନ୍ଦଙ୍କ ଫଟୋ ଶିରତଳେ ଗୋଟିଏ ବାକ୍ୟ ପଢ଼ିବାକୁ ପାଇଥିଲି । want men with Capital 'M' ।

ମୁଁ କିନ୍ତୁ ଜଣେ ମଣିଷ ପରି ମଣିଷର ସନ୍ଧାନ ପାଇଥିଲି ଜେଲ୍ ହାଜତରେ । ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇ ଯେଉଁ କେତେଦିନ ଜେଲ୍ ରେ ଥିଲି ।

ଆମେ ପ୍ରାୟ ୫୦ ଜଣ ଛାତ୍ର ଜେଲ୍‌ରେ ଥିଲୁ । ମାଟି ଖୋଳି ଗଛ ଲଗାଇବା ଆମର ମୁଖ୍ୟ କାମ । ସମୟେ ସମୟେ ଜେଲ୍ ଗଛମାନଙ୍କ ଉନ୍ନତି ପାଇଁ ଏଇ ସାମାନ୍ୟ କାମ ପାଇଁ ବାକ୍ ବିତଣ୍ଡା ଚାଲେ ।

୬ ମାସ ଜେଲ୍ ଜୀବନ ସତେ ଯେମିତି ଆମକୁ ଏକ ଅଲୌକିକ ମୃକର ପରି ଲାଗୁଥାଏ । ହସ, ଖୁସି, ସନ୍ଧ୍ୟାରେ ତାସ୍ ଖେଳ, ୪ ଟାରେ ଜଗୁଆଳି ହାତରେ ଜେଲ୍ ବାହାରୁ ଜଳଖିଆ, ସିଗାରେଟ୍ ମଗାଇବା ଆମର ପାଇଁ ଯେମିତି ଏକ ନିତି ଦିନିଆଁ ରୁଟିନ୍ ବନି ଯାଉଛି ।

ଏଇ ସମୟ, । ସେ ଯେମିତି କାହାରିକୁ ଅପେକ୍ଷା କରେନା । ଅପେକ୍ଷାକରେନା ବୋଲି କିଏ କହୁଛି । ଆଇନ୍‌ଷ୍ଟାଇନ୍‌ଙ୍କ ସୂତ୍ରରେ ଯଦି ଜଣେ ଲୋକକୁ ଏକ ତପ୍ତ ଚିମୁଟା ଉପରେ ବସାଇ ଦିଆଯାଏ ସେ ୧୦ ମିନିଟ ସମୟ ୧ ଘଣ୍ଟା ପରି ଜଣାପଡେ, ଯଦି ଜଣେ ଷୋଡ଼ଶୀ ରୂପସୀ କୋଳରେ ବସାଯାଏ ତେବେ········ ।

ସମୟର ସ୍ରୋତରେ ସେଦିନ ମୋର ପ୍ରଥମ ସାକ୍ଷାତ ଏଇ ମକରଧ୍ୱଜ ସାଙ୍ଗରେ, ଉଦ୍‌ଭ୍ରାନ୍ତିଆ ଟୋକା ସେ । ଫକୀର ମୋହନଙ୍କୁ ଉଦ୍‌ଭ୍ରାନ୍ତିଆ ଟୋକା ମକରାର ସେ ବଂଶର ନୁହେଁ କି ସେ ମକରଧ୍ୱଜ ସାଙ୍ଗରେ ଏ ମକରା ନାତିର ପୁରୁଷ ସମ୍ପର୍କ ବି ନଥିଲା ।

ସେଇ ମକରଧ୍ୱଜ । କଳା ମଚ ମଚ ହୃଷ୍ଟ ପୁଷ୍ଟ ୬ ଫୁଟ ଲମ୍ବା ସୁସ୍ଥ ସବଳ ଯୁବକଟିଏ, ମାଳ ସାତସିଆଁ ଲୁଙ୍ଗିଟାକୁ କଛାମାରି ପିନ୍ଧିଛି । ଅଣ୍ଟାରେ ନାଲି ଗାମୁଛାଟାଏ ଭିଡ଼ିଦେଇ, ପାଣି ବୋହୁଛି । କେତେବେଳେ ମାଟି ହାଣୁଛି । ନଡ଼ିଆକତା ରସି ବଳୁଛି ।

ମୋ ମନରେ ସନ୍ଦେହ ହେଲା । 'ଏତ ମୁଣ୍ଡା ମରଦଟା ପୁଣି, ଚୋରି କରୁଥିଲା, ଶଳା । ଖଟି ଖାଇବାକୁ ଭଗବାନ ହାତ ଦିଟା ଦେଇଛନ୍ତି, ହାତ କି ଗୋଡ଼ ଛିଡ଼ି ପଡ଼ିଥିଲେ ସିନା ଚୋରି କରିଥାନ୍ତା । ମୁଁ ତା' ପାଖକୁ ଗଲି । ସନ୍ଦେହୀ ମନରେ ପଚାରିଲି ତମେ କି' ଚୋରିକରିଥିଲପେ—ଏଠାରେ ନଡିଆ ରସି ବଳୁଛ······ । ସେ ରାଗିଯାଇ କହିଲେ ହଇହେ ବାବୁ ତମେ କି ଚୋରି କରିଛ ଏ ଜେଲ୍‌ରେ ଅଛ । ତମେ ଆଗେ କହିଯାଅ ତା' ପରେ ମୁଁ କହିବି ।

ସେ ମୋତେ ଓଲଟି ପ୍ରଶ୍ନ କଲା,
ମୁଁ ଚମକି ଗଲି,

ମୁଁ ତ' ଛାତ୍ର ଆନ୍ଦୋଳନର ନେତା, ନିଜେ ସେକ୍ରେଟେରୀ ଥିଲି । ବିରୋଧୀଦଳର ୫ ହଜାର ଟଙ୍କା ଲାଞ୍ଚ ନେଇ ସରକାରୀ ଦଳର ମୁଖ୍ୟମନ୍ତ୍ରୀଙ୍କୁ ଟେକା ପଥର ଫିଙ୍ଗିଲି । ପୋଲିସ୍ ଗିରଫ କଲା ଆମେ ସବୁ ସଚ୍ଚା ଛାତ୍ର

ନେତା ବନି ଗଲି ।

(ମୁଁ କିଣି ଏତେ ବୋକା ଏକଥା କଣ ଲୋକଟାକୁ କହିଥାନ୍ତି)

ମୁଁ ତାକୁ ବୁଝାଇଲି ଗଣତାନ୍ତ୍ରିକ ଦେଶରେ ଛାତ୍ରମାନଙ୍କୁ ନୈତିକ ଅଧିକାର ପାଇଁ ଆମେ ଆନ୍ଦୋଳନ କରି ଜେଲ ବରଣ କରିଛୁ । ଠିକ୍ ସେମିତି ନେତାଜୀ, ଗାନ୍ଧିଜୀ, ଉଚ୍ଚ ନେତାମାନେ ଦେଶ ସ୍ୱାଧୀନପାଇଁ ଆନ୍ଦୋଳନ କରୁଥିଲେ ।

ସେ ବୁଝିଲାକି ନାହିଁ ମୁଁ ଜାଣେନା କିନ୍ତୁ ମୁଁ ମଜଗା କଥାରେ ଉତ୍ତର ଦେଇଛି । ସେଥିକରେ ସେ ଖୁସି

ସେ ଥକାମାରି ବସିଗଲା ମତେ ବସିବାକୁ କହି ସେ ଆରମ୍ଭ କଲା ।

ବାବୁ, ମୁଁ ସ୍ୱେଛାକର ଜେଲ ଆସିନି, ପରର ଉପକାର କରି ଜେଲ ଆସିଛି ।

ଆମେତ ପରର କ୍ଷତିକରି ଜେଲ ଆସିଛୁ କିନ୍ତୁ ତୁ ଏମିତି ଉପକାର କରିଛୁ ।

ମୋ ଭାବନାରେ ପୂର୍ଣ୍ଣଚ୍ଛେଦ ପକାଇ ସେ କହିଲା । ବାବୁ ମୋ ନାଁ ମକର । ମୁଁ କଟକରେ ରିକ୍ସା ଚଲାଏ । ବାଦାମବାଡ଼ିର ଗୋଟାଏ ଗଳିରେ ଝୁମ୍ପୁଡ଼ି ଘର କରି ରହୁଥିଲି । ଦିନମାନ ରିକ୍ସା ଚଲାଏ ଯାହା ରୋଜଗାର କରେ ତାକୁ ଘରକୁ ପଠାଏ । ଦିନକୁ ୨ ଟଙ୍କା ରଖି ବ୍ୟାଙ୍କରେ ଜମା ରଖେ ।

ମୁଁ ପଚାରିଲି ଟଙ୍କାତ ଘରକୁ ପଠାଉ ନାହିଁ ବ୍ୟାଙ୍କରେ ଦୁଇଟଙ୍କା କାହିଁକି ରଖୁ ।

ସେ କାନ୍ଦି କାନ୍ଦି ହୋଇ କହିଲା ବାବୁ—ମୋ ଘରେ ବାଢୁଅ ଭଉଣୀଟିଏ ଅଛି । ତାକୁ ଆମ ଗାଁ ଦଗୁର ଧାଙ୍ଗରେ ବାହାଦେବି ବୋଲି

ଠିକ୍ କରିଛି । ସେ ସାଇକଲ ଖଣ୍ଡେ ଯଉତୁକ ନେବ । ସେଇଥି ପାଇଁ ଦି ଦି ଟଙ୍କା ରଖେ । ଘରେ ଅନ୍ନପୂର୍ଣ୍ଣା ମା', ଭଉଣୀ, ଆଉ ମା ଗଲ୍ପନ ବାହା ହେବାକୁ ଜିଗର କଲି । ମୁଁ ମନାକଲି ଆଗେ ପାରିକୁ ବାହା କରି ପରେ ଯାଇ ମୋ କଥା ।

ରିକ୍ସା ଭଡ଼ାରୁ ଯେତିକି ପାଏ— ସେଇ ଯଥେଷ୍ଟ, କେଉଁ ଦିନ ସକାଳ ୬ରୁ ସନ୍ଧ୍ୟା ୬ଟା ତ କେଉଁ ଦିନ ସଂଧ୍ୟା ୬ରୁ ସକାଳ ୬ ଯାଏ ରିକ୍ସା ଟାଣେ । ସକାଳ ଅପେକ୍ଷା ରାତିରେ ବେସ୍ ଦି ପଇସା ଭଲ ରୋଜଗାର ହୁଏ ।

ରାତିରେ ଦି ପଇସା ଅଧିକ ଭଡ଼ା ନେଲେ ଲୋକେବି ଅମଙ୍ଗ ହୁଅନ୍ତି । ବାନରସ୍ଥିମ ପରଠାରୁ ଦି ପଇସା ଭଲ ରୋଜଗାର ହେଉଥାଏ । କିନ୍ତୁ ଏ ଶଳା ପୋଲିସ୍ ବାଲା ଆମକୁ ରଖେଇ ଉଠେଇ ଦିଅନ୍ତିନି । ରିକ୍ସା ଟିକିଏ ରାସ୍ତା କଡରେ ରହିଲେ ଦୌଡି ଆସି ପମ୍ପ ଖୋଲି ଦିଅନ୍ତି, ରେଲି ବାଡ଼ରେ ଦି ପାହାରେ ପକାନ୍ତି, ଯଦି କିଏ କାର୍ ଜିପ୍ ରଖେ ତାକୁ କହନ୍ତିନି ଟ୍ରେକର ରଖିଲେ ବି କିଛି କହନ୍ତିନି ଟ୍ରେକର ବାଲା ତାଙ୍କୁ ଭଲ ଦି ପଇସା ମାସିକିଆ ଖର୍ଚ୍ଚ ଦିଅନ୍ତି ।

ଦିନେ ରାତିରେ । ପ୍ରାୟ ୧୨ଟା ଗୋଟାଏ ହେବ, ମୁଁ ୯ଟାରେ ଫିଲ୍ମ ଦେଖି ଫେରୁଥିବା ଦି ଜଣ ପାସେଞ୍ଜର ଆଣି ଦୋଳମୁଣ୍ଡାଇରେ ଛାଡ଼ିଲି । ପାଖ ମଦ ଦୋକାନରୁ ଦି' ପା କେଲ ମାଲ୍ ପି ଦେଇ ବସ୍ ଷ୍ଟାଣ୍ଡକୁ ଆସିଲି । ମୁଁ ସତ କହୁଛି ବାବୁ, ମୁଁ ମଦପିଏ । ଦିନସାରା ରିକ୍ସା ଟାଣି ଟାଣି ଦିଅଟିକେ ଅବସ ଲାଗିଲେ ମୁଁ ମାଲ ଦିଇ ପା ପିଇ ଦେଇ ଘରକୁ ଶୋଇବାକୁ ଚାଲିଯାଏ ।

ବାଦାମବାଡିରେ ସେତେବେଳକୁ ରାସ୍ତା ଶୁନଶାନ, କୋଉଠି କେମିତି ଗୋଟେ ଦିଟା ମିଠାଦୋକାନ ମିଠା ତିଆରି କରୁଥାନ୍ତି ଗ୍ରେଟ ଦୋକାନ ମାନେ କବାଟ ଦେଇ ଆଉଜା କରି ଶୋଇଥାନ୍ତି । ଦେଖିଲି ଦି

ଜଣ ଲୋକ ଗୋଟିଏ ୧୬, ୧୭ ବର୍ଷର ଝିଅଟିଏ ପଛରେ ଦୌଡ଼ୁଛି । ଝିଅଟି ଖାଲି ମରିଗଲିଲେ, ମରିଗଲିଲେ, ରଡ଼ି ଛାଡ଼ୁଛି, ମୁଁ ରିକ୍ସା ରଖି ଛିଡ଼ା ହେଲି ।

ସେଇ ଝିଅଟି ମୋ ଆଡ଼କୁ ଦୌଡ଼ିଆସି ମତେ କୁଣ୍ଢାଇ ପକାଇଲା ମତେ ଖାଲି ରକ୍ଷାକର, ରକ୍ଷାକର, ବୋଲି ବଡ଼ ପାଟିକରି କାନ୍ଦି ଗଡ଼ିଗଲା । ସେତେବେଳକୁ ମୋର ବି ନିଶା ଚଢ଼ି ଯାଇଥାଏ । ଝିଅଟି କହିଲା ଭାଇ,
ସେ ଦିଜଣ ମୋତେ ମାରିପକେଇବେ ମତେ ରକ୍ଷା କର ।

ମୁଁ ଦେଖିଲି ସେଇ ଝିଅଟି--ମୋ ସାନଭଉଣୀ ପାରୁ ପରି ଦିଶୁଛି । ମୁଁ ଭାବିଲି ସତେ ଯେମିତି ପାରୁ ମତେ ଡାକୁଛି—ମୋ ମନରେ ବଳ ଆସିଲା । ସେଇ ଦିଟା ମଦୁଆକୁ ଦେଇ ଦି' ଚଟକଣା ମୁହଁମାରି ତଳେ ପକାଇ ଦେଲି । ଗୋଟାଏ ସେଥିରୁ ମରିଗଲାକି କ'ଣ ମୋତେ ଜଣା ନାହିଁ । ଝିଅଟିକୁ ରିକ୍ସାରେ ବସାଇ ମୋ ବସାକୁ ଆଣିଲି ।

ତା' ନାଁ ପଚାରିଲି । କହିଲା ଚମ୍ପା, ବାପ୍ ବଢ଼ିଆ ନାଁ ଟା । ମୋ ଭଉଣୀ ନାଁ ତ' ପାରୁ । ସେ କହିଲା ତା ଜୋଉ ରୋଗଣା ବାପାକୁ ନେଇ ମେଡ଼ିକାଲ ଆସିଥିଲା । କାଲି ରାତିରେ ମରିଗଲା, ଘରକୁ ଫେରିବା ପାଇଁ ପଟାମୁଣ୍ଡାଇ ରାତି ଗାଡ଼ି ପାଇଲାନି । ବସ୍ ଷ୍ଟାଣ୍ଡରେ ସେମାନେ ରଖେଇ ବସେଇ ଦେଲେନି,କହିଲେ ସରକାରଙ୍କ ନିୟମ ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ୧୦ଟା ପରେ କେହି ରହିବେନି । ଏଇ ବାହାରେ ବସିଥିଲି ତା'ପରେ ସେ ଦିଟା ମଦୁଆ, ଏଇମିତି କେତେ କ'ଣ କହିସେ କାନ୍ଦିଲା । ମତେବି କାନ୍ଦ ଲାଗିଲା, ମୁଁ କହିଲି ଚମ୍ପା ତୁ ଶୋଇପଡ଼ ରାତି ପାହିଲେ ତତେ ନେଇ ପଟାମୁଣ୍ଡାଇ ବସରେ ବସେଇଦେଇ ଆସିବି । ସେ ଘରେ ଶୋଇଥା ମୁଁ କବାଟ ଆଉଜେଇ ଦେଇ ବାରଣ୍ଡାରେ ଶୋଇଛି ।

ରାତି ପାଇବାକୁ ପ୍ରହରେ କି ଦି ପ୍ରହର ଅଛି, ପୋଲିସ୍ ବାଲା ୨ଜଣ ଆସିଲେ । ତାଙ୍କ ସାଙ୍ଗରେ ସେଇ ଦିଟା ମଦୁଆ ଟୋକା । ମୋର ଘର କବାଟ ବାଡ଼େଇଲେ ଚମ୍ପା ଉଠିଲା, ମୁଁ ବି ବାରଣ୍ଡାରୁ ଉଠିଲି । ମୋତେ

ଦୁଇ ପାହାର ମକାଇ ଦାରୋଗା ବାବୁ କହିଲେ—ଶଳା ପ୍ରେମ କରୁଛନ୍ତି; ଟୋକିଟାକୁ ବାଦାମବାଡ଼ିରେ ଠେକିଆଣି ଘରଭିତରେ ରଖିଛନ୍ତି । ମୁଁ କିଛି ବୁଝି ପାରିଲିନି । ସେମାନେ କେହି ଶୁଣିଲେନି ମତେ ମଦୁଆ ବୋଲି କହି ପୁଣି ବାଡେଇଲେ ସେଇ ଗୁଣ୍ଡାଟା ଦାରୋଗା ବାବୁଙ୍କୁ ଦେଖେଇ କହିଲା ହେଇ ସାର ଦେଖନ୍ତୁ ନାହିଁ ତା' ପାଟିରୁ କେମିତି ମଦ ଗନ୍ଧ ବାହାରୁଛି ମୁଁ ତ ସତରେ ମାଲ୍ ପିଇଛି ସେମାନେ ଝିଅକୁ ଜବରଦସ୍ତ ନେଇଗଲେ କୁଆଡେ ନେଲେ ମୁଁ ଜାଣିନି ସେ କେବଳ ଭାଇ ଭାଇ ବୋଲି ରଡି ଛାଡୁଥିଲା-ମତେ ପୋଲିସ୍ ଦିଜଣ ଥାନାକୁ ନେଇ ବାଡେଇଲେ କଣ୍ଟା ବୁଟ୍‌ରେ ମୋ ଉପରେ ଚଢିଗଲେ । ମୋ ଠାରୁ ସାଦା କାଗଜରେ ଟିପ ନେଲେ ସେମାନେ ମୋତେ ଯେତେବେଳେ କୋର୍ଟରେ ହାଜର କଲେ ସେତେବେଳେ ସେଇଦିନର ମଦୁଆ ସାକ୍ଷୀ ଦେଲେ । କ'ଣ ସାକ୍ଷୀ ଦେଲେ କେଇଜାଣି, ମୁଁ କିଛି ବୁଝି ପାରିଲିନି ମୋତେ ଦିବର୍ଷ କାମଖଟା ଜେଲ୍ ଆଦେଶ ହେଲା ବୋଲି କହିଲେ । ମୋ ହାତରେ ହାତ କଡି ଲଗାଯାଇ ପୁଣି ଜେଲ୍‌କୁ ଅଣା ଗଲି । ମୁଁ ମୋ ହାତ କଡ଼ିର ଦଉଡ଼ିକୁ ଧରିଥିବା ପୋଲିସ୍‌ବାଲାକୁ ପଚାରିବାରୁ ସେ କହିଲା—"ଶଳା ରିକ୍ସା ଟାଣୁଥିଲୁ । ପୋଲିସ୍‌ବାଲା ପୁଅ ସାଙ୍ଗରେ—ମସ୍ତାନି କରୁଥିଲୁ କାହିଁକି ? ପୁଅ ଚକ ପେପିଲେ ଜାଣିବୁ" ।

ତେବେ ସେଇ ମଦୁଆ—ଟୋକା ଦିଟା କଣ କୋଉ ପୋଲିସ୍ ବାଲା ପୁଅ !

ମୋ ମୁଁଣ୍ଡ ଘୂରିଗଲା । ମୁଁ ଏବେ ଏଇ ଜେଲରେ । ଜେଲର କାଲି ଆସି କହିଲେ ମକର ତୁ ଠିକ୍ ଠିକ୍ କାମ କରୁଥିବାରୁ ତୋର ଦଣ୍ଡ କମାଇ ଦିଆଯାଇଛି, ଦୁଇଦିନ ପରେ ମୁଁ ଜେଲ୍‌ରୁ ଖଲାସ ହେବ ।

ମକରର କଥା ମୁଁ ମନଦେଇ ଶୁଣୁଥିଲି । ଏ ଲୋକଟା କଣ ସତରେ ସତ କହୁଛି !

ତେବେ ସବୁ ରିକ୍ସାବାଲା କଣ' ଖରାପ । ମୋ ମନ, ବିବେକ

ମଧ୍ୟରେ ଧସ୍ତା ଧସ୍ତି ଲାଗି ବିବେକର ଜୟ ହେଲା । ନାଁ — ମନର ଯାହା କହୁଛି । ଠିକ୍ କହୁଛି ।

ଜେଲବାଲା ଖବର କାଗଜ ଦେଇଗଲା ସମ୍ବାଦ ଉପରେ ଆଖି ପକାଉ ପକାଉ ଗୋଟିଏ—ସମ୍ବାଦ ଉପରେ ମୋ ଆଖି ଅଟକି ରହିଗଲା— "ଧର୍ଷଣ ଅଭିଯୋଗରେ ଗିରଫ ରିକ୍ସା ବାଲାର ଭଉଣୀ ଉପରେ ଗଣଧର୍ଷଣ ଅନ୍ଧୁଣୀ ମା'ର ଆକସ୍ମିକ ମୃତ୍ୟୁ" ସମ୍ବାଦଟି ଆମୂଳ ଚୂଳ ପଢ଼ିବାପରେ ମୋ ଆଖି ଦୋଟି ଆପେ ଆପେ ବୁଜି ହୋଇ ଯାଉଥିଲା, ଆଖିର ଲୁହରେ ।

ଭାବୁଥିଲି, ସେଇଦିନ ଦ୍ୱିପ୍ରହରରେ ଲଣ୍ଠନଟିଏ ଲଗାଇ ଓଡ଼ିଶାର ଗଳି କନ୍ଦିରେ ପାପୀ, ପଶୁ, ମନର ପୋଲିସ୍ ବାଲାର ପୁଅକୁ ଖୋଜି ବୁଲନ୍ତି ଠିକ୍ ଯେପରି ଖୋଜି ବୁଲୁଥିଲେ ଗ୍ରିସ୍ ଦେଶର ଶ୍ରେଷ୍ଠ ବିଚାରକ ଡାୟୋଜେନସ୍ ।



# ସ୍ମୃତିରୋମନ୍ଥନ

ଗାଁ କୁ ଫେରିଗଲ, ଗାଁ କୁ ଫେରିଯିବାପାଇଁ କିଏ ନଚାହେଁ ? ସହରର ପିଚୁରାସ୍ତାଠାରୁ ଗାଁର ଧୂଳି ଧୂସରିତ ଧରଣୀ, ଗାଁ ହାଟ, ପୌଷ ସନ୍ଧ୍ୟାରେ କୃଷୀ ତାର ସୁନା ଫସଲକୁ ଶଗଡ଼ ଗାଡ଼ିରେ ଲଦିଦେଇ ମନ ମତାଣିଆଁ ଗୀତ ଗାଇ ଗାଁକୁ ଫେରୁଥିବାର ପ୍ରାକୃତିକ ଦୃଶ୍ୟ ଠାରୁ ଗାଁର ଗୋଡ଼ମାଟି ଚାଣିପବନ ସେ ସବୁରୁ ଯେଉଁ ଆନନ୍ଦ ମିଳିଥାଏ, ସହର ର ଛନ୍ଦହୀନ ବନ୍ଧା ଜୀବନ ଠାରୁ ଯେ ନିଶ୍ଚିତ ଭାବେ ଆନନ୍ଦ ଦାୟକ ଏହାକୁ ଯେ କୌଣସି ଲୋକ ମୁକ୍ତ କଣ୍ଠରେ ସ୍ୱୀକାର କରିବ ।

କିନ୍ତୁ ପ୍ରଶାନ୍ତ ଏକଥା ବିଶ୍ୱାସ କରି ପାରିଲାନି । ଗାଁ ଗାଧୁଆ ତୁଠରୁ ଚୁପ୍ ଚୁପ୍ ଗାଁ ମାଇପଙ୍କ କେଇପଦ କଥା ତା ମନରେ ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା ।

ଠିକ୍ ଦୁଇଦିନ ପରେ ପ୍ରଶାନ୍ତ ଫେରିଆସିଲା ଗାଁରୁ । କିନ୍ତୁ ମନରେ ନଥିଲା ତାର' ସରସତା । ମୁହଁରେ ଉଙ୍କି ମାରୁଥିଲା ବିଷାଦର କଳା-ହାଣ୍ଡିଆ ମେଘ । ସେତବେଳକୁ ବାପା ମଳୟବାବୁ ଆସିନଥାନ୍ତି ଅଫିସରୁ, ଜୟନ୍ତ ମଧ୍ୟ ଫେରି ନଥାନ୍ତି କଲେଜରୁ । ମା' ସନ୍ଧ୍ୟାଦେବୀ ପ୍ରଶାନ୍ତର ଆକସ୍ମିକ ପ୍ରତ୍ୟାବର୍ତ୍ତନରେ ଯେତିକି ବିସ୍ମିତ ହେଲେ ତାଠାରୁ ଅଧିକ ବ୍ୟଥିତ ହୋଇପଡ଼ିଲେ ତା'ର ବିଷର୍ଣ୍ଣ ମୁହଁକୁ ଦେଖି । ସେ ସ୍ନେହାସକ୍ତ କଣ୍ଠରେ ପଚାରିଲେ-'ପ୍ରଶାନ୍ତ ତୁ ଏମିତି ହଠାତ୍ ପଳାଇ ଆସିଲୁ ? ସହରି ହାଓ୍ୱା ଭଲ ଲାଗୁନି ବୋଲିତ ଏମ. ଏ ପରୀକ୍ଷା ପରେ ନିଜେ ଜିଦ୍ ଧରି ବସିଲୁ ଗାଁକୁ ବୁଲିଯିବା ପାଇଁ । ଆଉ ମନ ଦୁଃଖ କରି ପଳାଇ ଆସିଲୁ କାହିଁକି ? କଣ ହୋଇଛି ତୋ'ର ?

ସନ୍ଧ୍ୟାଦେବୀ ପ୍ରଶାନ୍ତର ମୁହଁରେ ବଡାଦର ଛୁଇ ଦେଖି ସହି ପାରୁନ ଥିଲେ ସେ ଯେ ତାଙ୍କର ରକ୍ତ ମାଂସରୁ ସୃଷ୍ଟି । କିନ୍ତୁ ପ୍ରଶାନ୍ତ ! ସବୁ ଶୁଣି ମଧ କିଛି ଶୁଣି ପାରୁନଥିଲା । ଅସ୍ଥିରତାର ଢେଉରେ ତା'ର ମନ ଡଙ୍ଗାଟି ନାଚୁ ଥିଲା । ଲୁଣ୍ଡ ନଖୋଲି ଝଡ ବେଗରେ ଘର ଭିତରକୁ ପଶିଯାଇ ନଥ କରି ଖଟ ଉପରେ ବସି ପଡ଼ିଲା । ଅପରନ୍ତୁ ଭାବନା ମଧ୍ୟରେ ତା'ବକ୍ଷପଟରେ ପଟି ହେଉଥିଲା । ଗାଁର ସେହି ସ୍ତ୍ରୀ ଲୋକମାନଙ୍କର କାନକୁହା ଟୁପ୍ ଟାପ୍ କଥା—ଇଏ ମଳୟ ବାବୁଙ୍କର ନିଜ ପୁଅ ନୁହେଁ ମ, ସନ୍ଧ୍ୟାର ସେହି ଆଗ ପୁଅଟା । ଏକଥା ପଦେକରେ ପ୍ରଶାନ୍ତର ମନ ଆକାଶରେ ସୃଷ୍ଟି ହୋଇଥିଲା ବୈଶାଖୀ ଝଡ । ସେହି ଅଶାନ୍ତ ଝଡରେ ଲୀନହୋଇ ଯାଇଥିଲା । ସେ ନିଜେ ଯେତିକି ଉତ୍ସାହ, ଆଗ୍ରହରେ ଦୌଡ଼ି ଯାଇଥିଲା ତା'ର ଆକାଂକ୍ଷିତ ଗାଁରେ ବଳକା ସମୟତକ ହସ ଖୁସିରେ କଟାଇବା ପାଇଁ । ସେତିକି ଦୁଃଖ ଆହତ ଚିନ୍ତା ଭାରକ୍ରାନ୍ତ ମନନେଇ ଫେରିଆସିଲା ତା'ର ନିଜ ହିନଆଁ ପରିଚିତ ସହରୀ ଜୀବନକୁ । ପ୍ରଶାନ୍ତ ଭାବି ଚାଲିଥିଲା ତା'ଭାବନାର ଯେପରି ପରିସମାପ୍ତି ନଥିଲା ।

ସନ୍ଧ୍ୟା ଦେବୀ ମଧ ନିଜ କୋଠରୀ ମଧ୍ୟରେ ବିଚଳିତ ମନରେ ଘୂରି ବୁଲୁ ଥିଲେ ଅନାବନା ଭାବନାର ଗହଳିଆ ଜଙ୍ଗଲରେ ପଶି । ଗାଡ଼ିର ହର୍ଣ୍ଣ ଶୁଭିଲା ଗେଟ୍ ପାଖରେ । ବୋଧେ ଅଫିସରୁ ଫେରି ଆସିଲେ ମଳୟ ବାବୁ —ପ୍ରଶାନ୍ତର ବାପା ।

ମଳୟକାନ୍ତ ପଟ୍ଟନାୟକ ଓ ଏ. ଏସ୍. ସରକାରଙ୍କର ଜଣେ ଦାୟିତ୍ୱ ସମ୍ପନ୍ନ ଦେଶ୍ମ କର୍ମଚାରୀ । ଘରେ ପଶୁ ପଶୁ ସନ୍ଧ୍ୟାଦେବୀ ଅଧୈର୍ଯ୍ୟ ହୋଇକହି ପକାଇଲେ—ପ୍ରଶାନ୍ତ ଆଜ କାହିଁକି ଗାଁରୁ ଫେରିଆସିଲା । ଯେତେ ପଚାରିଲେ କିଛି ନକହି ସେ ଘରେ ମନ ଦୁଃଖରେ ଶୋଇଛି ।

ମଳୟ ବାବୁ ଅନୁଭବ କଲେ ସନ୍ଧ୍ୟା ଦେବୀଙ୍କ କଣ୍ଠରେ ଫୁଟି ଉଠୁ ଥିଲା ଆବେଗ, କରୁଣତାର ସ୍ୱର । ସେ ନିଜକୁ ମଧ ଶକ୍ତିହୀନ ମନେ କରୁ

ଥିଲେ । ତାଙ୍କ କଳଜାରୁ ଛିଡ଼ିପଡ଼ୁଥିଲା ଟୋପାଏ ରକ୍ତ । ପ୍ରଶାନ୍ତ ତାଙ୍କର ଅତି ଆଦରର ଟେଲିବସରର ସ୍ନେହ ସୁଖର ଏକକ ପ୍ରଶାନ୍ତ ଶୋଇଛି ମନ ଦୁଃଖରେ । ସେବା ଥୟ ଧରି ରହିପାରନ୍ତେ କିପରି ? ପଶିଗଲେ ପ୍ରଶାନ୍ତର ଶୋଇବା ଘରକୁ । ପଛେ ପଛେ ସନ୍ଧ୍ୟାଦେବୀ ।

ବାପାଙ୍କର ଡାକରେ ତ୍ରକ୍ତଭସ୍ତ ହେଲା ପ୍ରଶାନ୍ତ, ଲୁହ ଛଳ ଛଳ ଆଖିରେ ପୋଛି ଶୁଣିଲେ ସେ । ତୋର କ'ଣ ହୋଇଛି ? ବାପାଙ୍କର ଏହି ପ୍ରଶ୍ନର ଉତ୍ତର ଦେଇଥିଲା ତା ଆଖିର କେଇ ବୁନ୍ଦା ଲୁହ — ତା ବାଷ୍ପାକୁଳ କଣ୍ଠର ଗଦ୍‌ଗଦ୍ ସ୍ୱର କାହିଁକି ? କାହିଁକି ଆଜି ପର୍ଯ୍ୟନ୍ତ ମୋତେ ଲୁଚାଇ ଥିଲେ ମୋ ଜୀବନର ଅଲୁଚା କାହାଣୀ ।

ଏହି କଥା ପଦକରେ ମଥା ଘୂରି ଯାଇଥିଲା ସନ୍ଧ୍ୟାଦେବୀଙ୍କର । ଆଖି ପିଛୁଳାକେ ଆସି ସେ ଗଡ଼ିଯାଇଥିଲେ ନିଜ ଶୋଇବା ଖଟ ଉପରେ । ଖୁବ ବିବ୍ରତ ଓ ବ୍ୟଥିତ ହୋଇପଡ଼ିଲେ । ତାଙ୍କ ମନ ପରଦାରେ ଗୋଟିକ ଉପରେ ଗୋଟିଏ ନାଚି ଉଠିଲା ସେହି କଳଙ୍କିତ ଅତୀତର ଦୃଶ୍ୟ । ଗଭୀର ଚିନ୍ତା ଓ ଅସହ୍ୟ ବ୍ୟଥାର ଓଜନିଆ ହୋଇଉଠିଲା ତାଙ୍କର ମୁଣ୍ଡଟି । ଅନେକ ପରିଶ୍ରମ, କଷ୍ଟ କରି ଯେଉଁ କଥାକୁ ସେ ସମ୍ପୂର୍ଣ୍ଣ ପାଶୋରି ଦେଇ-ଥିଲେ ମନ ମଧ୍ୟରୁ । ଆଜି ଏକୋଇଶି ବର୍ଷ ପରେ ହଠାତ୍ ସେହି କଥାର ଚିନ୍ତା ସ୍ରୋତରେ ଭାସି ଭାସି ସେ ଯେପରି ଚାଲିଯାଉ ଥିଲେ ଦୂରକୁ — ବହୁ ଦୂରକୁ ।

ସେତେବେଳେ ଦଶମ ଶ୍ରେଣୀର ଛାତ୍ରୀ ସନ୍ଧ୍ୟା । ଅଙ୍ଗ ଅଲସ୍ୟରେ ଷୋଳଟି ବସନ୍ତର ପରଶ । ମନ ପବନ ମୁଗୁଟଙ୍କ ନବ ପଲ୍ଲବରେ ସୁରଞ୍ଜିତ ସରଳା, ଚପଳା, ଚଞ୍ଚଳ ଝିଅଟିଏ ସେ । ଗୋଲ ଗାଲ ମୁହଁରୁ ସବୁବେଳେ ମଲ୍ଲୀ ଫୁଲିଆ ହସ ।

ଧନୀ ଘରର ଝିଅ ନହେଲେ ମଧ୍ୟ କୌଣସି ଦିନ ଉପବାସରେ ରହନ୍ତି ନାହିଁ ସେମାନେ, ବାପାଙ୍କର ଗୋଟିଆ ପୋଷ୍ଟମ୍ୟାନ ଚାକିରିର ସ୍ୱଳ୍ପ ଆୟରେ

ବାପା ବୋଉ, ଆଉ ଗୋଟିଏ ଶ୍ରେଷ୍ଠ ସ୍ୱଇ ଭଉଣୀଙ୍କୁ ନେଇ ଶ୍ରେଷ୍ଠ ପରିବାର ଡଙ୍ଗାଟି ନିତିଦିନିଆ ସଂସାର ନଦୀର ଟାଣୁଆ ସୁଅରେ ମଧ୍ୟ ଏ ପାଖରୁ ସେପାଖକୁ ସୁ ରୁଖରେ ଲଗିଯାଏ ।

ସମୟେ ସମୟେ ତାଙ୍କ ଘରକୁ ଆସନ୍ତି କିଶୋର ବୋଉଙ୍କର ମାଉସୀ ଝିଅ-ଭଉଣୀର ପୁଅ ସନ୍ଧ୍ୟାର ଦୂରସମ୍ପର୍କୀୟ ଭାଇ । ସୁଠାମ, ସ୍ୱାସ୍ଥ୍ୟ ଯୁବକ କିଶୋର ତାଙ୍କ ସ୍କୁଲର ସହକାରୀ ଶିକ୍ଷକ । ଛୁଟି ଦିନ ମାନଙ୍କରେ କିଶୋର ଆସନ୍ତି; ସନ୍ଧ୍ୟା ପାଖରେ ବସନ୍ତି । ପାଠ ପଢ଼ା ସମ୍ପର୍କରେ ଏଣୁ ତେଣୁ ପଚାରନ୍ତି । କେବେ ପକ୍କା ମୁରବୀ ପରି ମନଦେଇ ପଢ଼ିବାକୁ କଡ଼ା ସ୍ୱରରେ ସନ୍ଧ୍ୟାକୁ ତାଗିଦ କରିବାକୁ ମଧ୍ୟ ପଛାନ୍ତି ନାହିଁ । ଆଉ ବେଳେ ବେଳେ ସନ୍ଧ୍ୟାର ଗାଲ ଚିପି ଦେଇ କହନ୍ତି—ମାଉସୀ ! ସନ୍ଧ୍ୟା ବଡ଼ ଦୁଷ୍ଟ ହେଲାଣି, ଜମାରୁ ପଢ଼ୁ ନାହିଁ । ଉତ୍ତରରେ ବୋଉଙ୍କ ମୁଖରୁ ସରୁ ହସମିଶା ସ୍ୱରରେ ଶୁଣନ୍ତି—ଭୁଲ ତା'ର ଭାଇ ମାଷ୍ଟର ସବୁ କିଛି । ମୋତେ କ'ଣ କହୁଛ ? ତା ପାଠ ପଢ଼ା ଦାୟିତ୍ୱ ତୋ ଉପରେ । ବୋଉଙ୍କର ଏଇ କଥା ପଦକରେ କିଶୋର ଆତ୍ମ ସନ୍ତୋଷରେ ଯେତିକି ଫୁଲି ଉଠେ, ତାଠୁ ଅଧିକ ଝାଉଁଳି ପଡ଼େ ସନ୍ଧ୍ୟାର ମୁହଁଟି କୁଆଁରୀ ଲାଜରେ ।

କିଶୋର ଆସନ୍ତି । ବିତଟା ରହି ଯାଆନ୍ତି, ତାଙ୍କ ଘରର ଅଭାବ ଅସୁବିଧାରେ ଭାଗୀ ହେବାପାଇଁ ଖୁବ ଆଗ୍ରହୀ ହୋଇ ଉଠନ୍ତି । ଯେପରିକି ସେ ତାଙ୍କ ଘରର ରୋଜଗାରିଆ ବଡ଼ ପୁଅ । ସେ ପରିବାର ହର୍ତ୍ତାକର୍ତ୍ତୀ ଅମାନିଆଁ ସମୟ ଚକ ଆଗକୁ ଯେତିକି ଗଡ଼ିଚାଲେ । କିଶୋରର ସ୍ନେହ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ମନ ଯାନଟି ସନ୍ଧ୍ୟା ଆଡ଼କୁ ସେମିତି ମାଡ଼ିଚାଲେ । ତାଙ୍କ ଘରକୁ କିଶୋରର ଅବାଧ ପ୍ରବେଶ ଯେତିକି ବଢ଼େ, ସନ୍ଧ୍ୟା ଓ କିଶୋର ମଧ୍ୟରେ ଦୂରତା ସେତିକି କମେ । କିଶୋରର ଇଚ୍ଛାହୁଏ ଯିବାପାଇଁ ସନ୍ଧ୍ୟାର ଆହୁରି ପାଖକୁ । ଏପରିକି ଦୁଇଟି ମନକୁ ଗୋଟିଏ କରିବା ପାଇଁ ଭିନ୍ନ ଆତ୍ମାକୁ ଅଭିନ୍ନ କରିବା ପାଇଁ ବିଚ୍ଛିନ୍ନ ଦେହକୁ ଅବିଚ୍ଛିନ୍ନ କରିବା ପାଇଁ କିଶୋରର ଯୁବ ପ୍ରାଣ ଆନ୍ଦୋଳିତ ହୋଇଉଠେ । କିଶୋରର ଆହୁରି ଇଚ୍ଛା

ହୁଏ ସଂଧାର ଯୌବନ ଜୁଆରଆ, ତାରୁଣ୍ୟ ତରଙ୍ଗାୟିତ ବକ୍ଷ ନଦୀରେ ଥରେ ଏ ପାଖରୁ ସେ ପାଖକୁ ପହଁରି ଯିବା ପାଇଁ । କିନ୍ତୁ ଇଏ ଏପରି ଏକ ବେଳର କଥା ଯେ କାହାକୁ ଖୋଲି କହି ହୁଏନାହିଁ କି ନିରବରେ ମନ ମଧ୍ୟରେ ସହି ହୁଏ ନାହିଁ । ହେଲେ ମନର ଅକୁହା କଥା ଚାପି ରହିବାକୁ ଚାହେଁ ନାହିଁ । ସେ ଉପ ତଳ ଓଠର ଫାଙ୍କ ଦେଇ ନିର୍ଗତ ନହେଲେ ମଧ୍ୟ ଦୁଇ ଆଖି ବାଟେ ବାହାରି ଯାଏ । କିନ୍ତୁ ସଂଧ୍ୟା କିଶୋରର ଏ ଅବ୍ୟକ୍ତ ଭାଷାକୁ ଦେଖି ମଧ୍ୟ ବୁଝି ପାରେ ନାହିଁ । କିନ୍ତୁ ବେଳେ ବେଳେ ତା ଫ୍ରକ ପିନ୍ଧା ପିଠିରେ କିଶୋର ଭାଇର ଗୋରା ହାତରେ ନରମ ସ୍ପର୍ଶରେ ସେ ତା ଛାତିରେ ଏକ ଅସହ୍ୟ ବେଦନା ଅନୁଭବ କରେ ଯାହାର ଉପଶମର ବାଟ ଖୋଜି ପାଏ ନାହିଁ । ତଥାପି ତାର ଇଚ୍ଛା ହୁଏ—ତା ପିଠିରେ କିଶୋର ଭାଇଙ୍କର ନରମ ସ୍ପର୍ଶରେ ସେ ତା' ଛାତିରେ ଯେଉଁ ଯନ୍ତ୍ରଣା ଅନୁଭବ କରେ । କିଶୋର ଭାଇଙ୍କର ସେହି ହାତରେ—ଥେଟିସ କୋଟକୁ ତା ଛାତିରେ ଜାବୁଡ଼ି ଧରି ସେ ନିଶ୍ଚୟ କରନ୍ତା ତା ଛାତିର ଅଦେଖା ଯନ୍ତ୍ରଣା ।

ସେଦିନ କିନ୍ତୁ ସଂଧ୍ୟାର ସମସ୍ତ ଶରୀରରେ ଯନ୍ତ୍ରଣାର ଉତ୍କଟତା ବଢ଼ି ଯାଇଥିଲା—ଯେଉଁଦିନ ଫୁଲ ସଜ ବେଳେ ତାଙ୍କ ଘର ଆଗରେ ଗାଁର ମୁଖିଆ, ସାହିର ମାମଲତକାର ସବୁ ଜୁଟ ହୋଇଥିଲେ । ଏକ କୋଳାହଳ ମଧ୍ୟରେ ସେହି ପରଘର ଭଙ୍ଗା, ବଡ ମୁଣ୍ଡିଆ ବାଧି ମହାନ୍ତି ତା'ର ବାପାଙ୍କୁ ଚଢ଼ା ଗଳାରେ କହୁଥିଲେ—"ମହାପାତ୍ରେ ! ତୁମକୁ ଆଜଠୁ ବାସନ୍ଦ କରା-ଗଲା, ତୁମର ଅଠରବର୍ଷ ପୁତ୍ରୀର ଅମାର୍ଜନୀୟ, ଝିଅ ପାପ ଗର୍ଭ ହୋଇଛି, ବାହା ନହୋଇ ମା' ହେବାକୁ ଯାଉଛି ।" ତାର ବାପା ତଳକୁମୁହଁ ପୋତି ଆଖି ଲୁହକୁ ଲୁଗାକାନିରେ ପୋଛି ସବୁ ନିରବରେ ଶୁଣି ଯାଉଥିଲେ, ବୋଉ ଘର ଭିତରେ ବସି ଫୁଲିଫୁଲି କାନ୍ଦ କହୁଥିଲେ । ଆଲୋ ଅଲକ୍ଷଣୀ ନାଁ ପକେଇ ପୋଡ଼ାମୁହିଁ, ଗାତପଶି ଏକଥା ଶୁଣାଇବା ଆଗରୁ ତୁ ବିଷ ଖାଇ ନମଲୁ କାହିଁକି ? ଏସବୁ କଥା ଶୁଣି ସେ ଦିନ ଆପାଦ ମସ୍ତକ ଥରୁଥିଲା ସଂଧାର । ମୁଣ୍ଡ ଘୂରାଇ ଦେଉଥିଲା, ଛାତିରୁ କଲିଜାଟା ଯେପରି ଛିଡ଼ି ପଡ଼ୁଥିଲା କାନ୍ଧଜାନ୍ଧି ବଡ ଗେଣ୍ଡାଟି ପରି ଦିଶୁଥିଲା ଜ୍ୟୋତିଆଖି ଯୋଡ଼ିକ ବୋଉର ମାଡ଼ରେ ଫୁଲି ଯାଇଥିଲା ଗୋଡହାତ, ତଥାପି ହତାଶିଆ ଗୃହିଣୀରେ

ଭାବନା ଡୋରୀରେ ଝୁଲିଝୁଲି ମନ ମଧ୍ୟରେ ଯେ ଖୋଜି ବୁଲୁଥିଲା ତାହାକୁ କଠୋର ତାଡ଼ନା, ତୀବ୍ର ଭର୍ତ୍ସନା, ବାଧା-ଗୋଇଠା ମାଡ଼ରେ ଅଧଜଳ କେଉଁଠି ନଥିଲା କହି ଦେବାପାଇଁ ତା'ର ଏ ଅବସ୍ଥା ପାଇଁ କିଏ ଦାୟୀ ବୋଲି !!

କିନ୍ତୁ ଚେତଣା ଭାଙ୍ଗିଲା ଯେତେବେଳେ ତାକୁ କୋଳରେ ଧରି, ଲୁହ ଭରି ଆଖି ଓ କୋହଁଳିଆ ସ୍ୱରରେ କହିଲେ—ସଞ୍ଜୁ ! ତୁମେ କେଉଁଠି କିପରି ଏ ବାଟରେ ଗୋଡ଼ ଖସାଇଲ-ସେତେବେଳେ ସେ କାନ୍ଦକାନ୍ଦ ସ୍ୱର ଥରଥର ଗଳାରେ କହିଥିଲା—ଆମ ସ୍କୁଲର ଆନୁଆଲ ଫଙ୍କସନ ଦିନ ଆମେ ସବୁ ବସି ଡ୍ରାମା ଦେଖୁଥିଲୁ, ହଠାତ୍ ଝଡ଼ ଓ ପରେ ପରେ ବର୍ଷା ଯୋଗୁ କିଏ କୁଆଡ଼େ ଚାଲିଯାଇଥିଲେ । ବର୍ଷା ଅନ୍ଧାର ରାତିରେ ଘରକୁ ପଳାଇଯାଇ ଥିଲେ । ବର୍ଷା ଅନ୍ଧାର ରାତିରେ ଘରକୁ ଏକାକୀ ଆସିବା ମୋ ପକ୍ଷେ ସମ୍ଭବ ନଥିଲା, ମୁଁ ଦୌଡ଼ିଯାଇ ଥିଲି କିଶୋର ଭାଇଙ୍କ ବସାକୁ । ବର୍ଷା ଛାଡ଼ି ଯାଇ ଥିଲା, କିନ୍ତୁ ସେ କଳା କଚିକଚି ରାତିରେ କିଶୋର ଭାଇ ମୋତେ ଛାଡ଼ିଦେଇ ନଥିଲେ । କ୍ରମେ ବଢି ଚାଲିଥିଲା ରାତିର ଗମ୍ଭୀରତା ଜମି ଆସୁଥିବା ନିଦରେ ନଇଁ ପଡ଼ୁଥିଲା ମୋର ଆଖି ପତା । ମୋର ଅଜାଣତରେ ମୁଁ ଢଳି ପଡ଼ିଥିଲି ସେହି ବସିବା ସ୍ଥାନରେ । ତା' ପରେ···ରାତି ସେତେବେଳକୁ କେତେ ହେବ ମୁଁ ଜାଣେନା, ହଠାତ୍ ଯେତେବେଳେ ମୋର ନିଦ ଭାଙ୍ଗିଲା ମୁଁ ଅନୁଭବ କଲି ମୋ ଉପରେ ଆନ୍ୟ ଏକ ଓଜନିଆ ଦେହର ଚାପ । ମୋ ମୁହଁ ପାଖରେ ଖର ନିଃଶ୍ୱାସ । ମୁହଁକୁ ମୁହଁ ଦିଶୁ ନଥିବା ଅନ୍ଧାର ମଧ୍ୟରେ ମୁଁ ଚିହ୍ନି ପାରିଥିଲି ସେ ଦେହଟିକୁ; କିନ୍ତୁ କେଉଁ ଏକ ଅଜଣା ପୁଲକରେ । ଅସୀମ ଆମୋଦରେ ମୁଁ ଜାବୁଡ଼ି ଧରିଥିଲି କିଶୋର ଭାଇଙ୍କୁ । ରାତି ପାହି ଯାଇ-ଥିଲା । ମୁଁ ହାଲୁକା ଦେହ; ଫିକା ଚେହେରା, ଶୁଖିଲା ମନ ନେଇ ଫେରିଥିଲି ଘରକୁ !!

ଏ ଭୁଣ୍ଡରୁ ସେ ଭୁଣ୍ଡକୁ ବ୍ୟାପି ଯାଇଥିଲା ସଂଧ୍ୟାର ଏପରିସ୍ଥିତି ପାଇଁ ଦାୟୀ ତାର କିଶୋରଭାଇ, ସମସ୍ତଙ୍କ ମୁହଁରେ ସେହି ଗୋଟିଏ କଥା—ଯଦି ତାକୁ କିଶୋର ସବୁଦିନ ପାଇଁ ଆଦରି ନିଅନ୍ତା—ବାଗୁର ଏକ ଦୁଃଖିନୀ ଝିଅର ଭାଗ୍ୟ ବଦଳି ଯାଆନ୍ତା—ହୀନମାନିଆ ଅବସ୍ଥା ସୁଧୁରି ଯାଆନ୍ତା—

କିନ୍ତୁ ସେତେବେଳେ କିଶୋର ଯେ କାହିଁ କେତେ ଦୂରରେ—ସୁଦୂର ବରହ୍ମପୁରରେ ରହି ଟ୍ରେନିଂ ନେଉଥାନ୍ତି ।

ଓ. ଏ. ଏସ ପରେ ନୂଆ ଚାକିରିରେ ଜଏନ କରି ଫେରିଥାନ୍ତି ଘରକୁ ଉଦାର ସୁନ୍ଦରବେଶୀ, ପରଦୁଃଖକାତର ମଳୟ ବାବୁ ; ଗାଁ ଝିଅ ସନ୍ଧ୍ୟାର ସମସ୍ତ ବିଷୟ ଶୁଣିବା ପରେ ଧାଇଁ ଯାଇଥିଲେ ସେଠାକୁ । ସନ୍ଧ୍ୟାବାପାଙ୍କର ଅଶ୍ରୁଳ ଆଖିର କରୁଣ କାହାଣୀ ମା'ଙ୍କ ସହିତ ଗାଁ ଲୋକଙ୍କର କଟୂକଥା ! ସବୋପରି ଏକ ନିରୀହା ଝିଅର ଅବସ୍ଥା ବିଷୟ ଚିନ୍ତା କରି ଗଭୀର ଦୁଃଖରେ ଅଭିଭୂତ ହୋଇପଡ଼ିଲେ ସେବରହ୍ମପୁର ନିଜେଯାଇ କିଶୋରକୁ ସମସ୍ତ ବିଷୟ ହୃଦବୋଧ କରାଇ ଏ ଘଟଣା ସମାଧାନର ଏକ ବାଟ ବାହାର କରିବାକୁ ପ୍ରତିଶ୍ରୁତି ଦେଇ ଫେରି ଆସିଥିଲେ ଘରକୁ ।

ଯଥା ସମୟରେ ଏକ ଟାଉଁଶିଆ ମନ ନେଇ ବରହ୍‌ମପୁରକୁ ଫେରି ଆସିଲେ ମଳୟବାବୁ । ତାଙ୍କରଚିନ୍ତିତମନ ନୀରସ ମୁହଁକୁ ଦେଖି ଘରେ ଭାଉଜ ତାଙ୍କର ପଚାରିଥିଲେ—କିଶୋର ରାଜି ହେଲାତ ମଳୟ ?

ନା—ଏହି ସ୍ପଷ୍ଟ ଉତ୍ତରଟି ଦେଇ ସେ କହିଲେ—ଭାଉଜ ଆଜିର ଦୁନିଆରେ ସଭ୍ୟ ମୁଖାପିନ୍ଧା ମଣିଷ ମଧ୍ୟରୁ ଅନେକ ଅସଭ୍ୟ, ମୂର୍ଖ ବର୍ବର ପିଶାଚ, ପଶୁ । ନିଜର ଗୁପ୍ତ ବାସନାକୁ, କୁତ୍ସିତ ଲାଳସାକୁ ଚରିତାର୍ଥ କରି ସିଏ ଏକ ସଜଫୁଟା ଫୁଲ ପରି ପବିତ୍ର ଗଙ୍ଗା ଜଳ ପରି ସ୍ବଚ୍ଛ ବାଳିକା ପ୍ରାଣରେ ଅପବିତ୍ରତାର—ଆବର୍ଜନା କଳଙ୍କର-ଅଃବିଳତା ଭରିଦେଇ ପର-ମୁହୂର୍ତ୍ତରେ ନିଜକୁ ଆଦର୍ଶ ଚରିତ୍ରବାନ ଯୁବକ ବୋଲି କହି ଆତ୍ମ-ଗର୍ବରେ ତୃପ୍ତ ହୁଏ । ମୋର ଇଚ୍ଛା ହେଉଥିଲା ସେପରି ଲୋକର ଗଳାଚିପି ମାରି ଦେବା ପାଇଁ ।

ଆଉ ପୁଣି କ'ଣ ଚିନ୍ତା କରୁଛ ?

ଭାଉଜଙ୍କର କଥା'ରେ ହଠାତ୍ ମଳୟବାବୁଙ୍କ ପାଟିରୁ ବାହାରି ପଡ଼ିଲା—ଏ ଗାଁର ମର୍ଯ୍ୟାଦା ରକ୍ଷାପାଇଁ ସୁଖୀ ପରିବାରର ମଙ୍ଗଳ ପାଇଁ ସନ୍ଧ୍ୟା

ବାପାଙ୍କର ତଳମୁଣ୍ଡ ଉପରକୁ କରିବା ପାଇଁ ବିଶେଷ ନିଷ୍ଠୁର ସମାଜର ଚାଛନ୍ଦ ବିଚାରରେ ଏକ ନିଷ୍ପାପା ବାଳିକାର ଜୀବନ ଧାପକୁ ଛିନ ଭିନ କରି ଅବହେଳାରେ ଲିଭିଲ ନଦେବା ପାଇଁ ମୁଁ ସଂଧ୍ୟାକୁ ତା'ର ଏ ଅବସ୍ଥାରେ ସବୁଦିନ ପାଇଁ ମୋର କରିନେବାକୁ ଠିକ କରିଛି । ସବୁ ଜାଣିବାପରେ ଭାଇ ଓ ତୁମେ ମୋ ମତରେ ଦ୍ୱିମତ ନହେବା ପାଇଁ ମୋର ଅନୁରୋଧ ।

ଶେଷରେ ଭାଇଙ୍କର ମତାମତ ଶୁଣି ମଳୟ ବାବୁ ଖୁସି ହୋଇଥିଲେ । ତୁ ସଭ୍ୟ, ଉଚ୍ଚଶିକ୍ଷିତ ଭଲମନ୍ଦ ବିଚାର କରିବାର ସମୟ ତୋର ଆସିଛି । ଜ୍ଞାନୋଦୟ ହୋଇଛି, ଏହା ପରେ ତୋ'ର ଏକାନ୍ତ ଇଚ୍ଛା ସେଥିରେ ଆମେ ଅନିଚ୍ଛା ପ୍ରକାଶ କରିବୁ କାହିଁକି ? ତୁ ସୁଖୀ ହୁଅ ତୋର ଭବିଷ୍ୟତ ଉଜ୍ଜ୍ୱଳ ହେଉ ଏହାହିଁ ଆମର କାମନା । ଭାଇଙ୍କର ଏହିକଥା ପାଖରେ ମଥା ନଇଁ ପଡିଥିଲା ମଳୟବାବୁଙ୍କର ।

ସଂଧ୍ୟାଦେବୀଙ୍କର ଭାବନାର ସ୍ରୋତ ବହିଚାଲିଥିଲା । ତା ସାଙ୍ଗକୁ କଇଁ କଇଁ କାନ୍ଦରେ ଅବାରିତ ଅଶ୍ରୁଧାରା ଆଖିରୁ ଝରିପଡୁଥିଲା । ଆଜି ମଧ୍ୟ ତାଙ୍କର ଠିକ ମନେ ପଡୁଛି ସେଦିନ ସେ ଏପରି କଇଁ କଇଁ ହୋଇ କାନ୍ଦିଥିଲେ ମଳୟବାବୁଙ୍କ ପାଖରେ ପ୍ରଥମ ସାକ୍ଷାତରେ ପହିଲି ମିଳନ ଅବସରରେ ଏକାନ୍ତ ଗୋପନରେ ଜୀବନର ଅଭୁଲା ଦିନରେ ବାସର ଶେଜରେ । ତାଙ୍କ ଆଖିରୁ ଲୁହ ପୋଛିଦେଇ ମଳୟବାବୁ କହିଥିଲେ । ତୁମ ଆଖିର ଲୁହ ପୋଛି ଦେବାକୁ ପ୍ରତିଜ୍ଞା କରି ମୁଁ ତୁମକୁ ଆଦରି ନେଇଛି ସଂଧ୍ୟା ମୋ'ର ପ୍ରତିଜ୍ଞା ପାଳନରେ ସାହାଯ୍ୟ କରିବା ପାଇଁ ତୁମେ ଏକ ପ୍ରତିଜ୍ଞା କରି ପାରିବ ?

ସ୍ୱାମୀଙ୍କର ପଦଧୂଳି ସୀମନ୍ତରେ ମାରି କରିଥିଲା—ହଁ ପାରିବି ।

ଦୁନିଆ ଜାଣିବ ଆମେ ସ୍ୱାମୀ ସ୍ତ୍ରୀ ! କିନ୍ତୁ ଯେଉଁ ପବିତ୍ର ମଧୁର ସଂପର୍କ ବିଷୟରେ ସ୍ୱାମୀ ସ୍ତ୍ରୀ ସଂଜ୍ଞାର ଯଥାର୍ଥତା ପ୍ରତିପାଦିତ ହୁଏ ! ସେହି ଆଦିମ

ଅଦମ୍ୟ ପ୍ରକୃତିଗତ ଲାଳସା-ଅଗ୍ନିରେ ଝାସ ଦେଇ ଆମେ ତୁମର ଗର୍ଭସ୍ଥ ଭ୍ରୂଣକୁ ଅପବିତ୍ର କରିବା ନାହିଁ, ଯେ ପର୍ଯ୍ୟନ୍ତ ସେ ଏ ଦୁନିଆର ଆଲୋକ ପବନ ସ୍ପର୍ଶ କରିଛି । ମଳୟବାବୁଙ୍କର ଏତାଦୃଶ ଭାବପ୍ରବଣତାରେ ବିସ୍ମିତ ହୋଇପଡ଼ିଥିଲେ ସନ୍ଧ୍ୟାଦେବୀ । ଲୁହଝରା ଆଖି କ୍ଷୀଣ କଣ୍ଠରେ ସେ ପଚାରିଥିଲେ—ଆଉ ସେ ଭ୍ରୂଣର ଭବିଷ୍ୟତ ?

ମୁଁ ମୋ ଅନ୍ତରରେ ସ୍ନେହ, ମନର ମମତା ଓ ପିତୃ କୋଳର ଶରଧା ବିତରଣ କରି ତାକୁ ଅତି ଆଦରର ଲାଳନ ପାଳନ କରିବି । ଏ ଦୁନିଆ ଦୁଆରେ ତାକୁ ଜଣେ ମଣିଷ-ପରି-ମଣିଷ କରି ବଢାଇବି ମୁଁ କଥା ଦେଉଛି ଦୁନିଆ ଜାଣିଲେ ମଧ୍ୟ ଦିନକ ପାଇଁ ସେ ଜାଣିବାର ଅବକାଶ ପାଇବ ନାହିଁ ଯେ ମୁଁ ତା'ର ଜନ୍ମଦାତା ନୁହେଁ ବୋଲି, ଜୀବନର କୌଣସି କ୍ଷେତ୍ରରେ ସେ ଟିକିଏ ଅବହେଳା ଅନୁଭବ କରିବାର ସୁଯୋଗ ମଧ୍ୟ ପାଇବ ନାହିଁ ।

ଜୟନ୍ତର ମା' ମା' ଡ଼ାକରେ ସନ୍ଧ୍ୟା ଦେବୀଙ୍କ ଭାବନା ରାଜ୍ୟର ସୂତା ଛିଣ୍ଡି ଯାଇଗଲା । ଠିକ୍ ସେତିକିବେଳେ ଘର ଭିତରକୁ ପଶି ଆସିଲେ ମଳୟବାବୁ ସତେ ଯେମିତି ଏ ସବୁ ଶୁଣିଥିଲେ ।

ମଳୟବାବୁ ପ୍ରଶାନ୍ତ ଓ ଜୟନ୍ତକୁ ନିଜ ପାଖକୁ ଟାଣିଆଣି କହିଲେ— ପ୍ରଶାନ୍ତ ମୁଁ ତୋର ବାପା ନୁହେଁ କିନ୍ତୁ ତୁ ଯେ ଜୟନ୍ତର ବଡ଼ଭାଇ ଏକଥା ତୁ କେବେ ଅସ୍ୱୀକାର କରିବୁନାହିଁ । ସନ୍ଧ୍ୟାର ତୁମେ ଦୁହେଁ ଦୁହେଁ ଅର୍ଦ୍ଧ ବିକଶିତ ପୁଷ୍ପ ତୁ ଏ ଘରର ବଡ଼ ପୁଅ ଏବଂ ସଂନ୍ଧ୍ୟା ଯେ ତୋର ମା' ଏ କଥା ତୁ କେବେ ଅସ୍ୱୀକାର କରିବୁ ନାହିଁ ?

ସେତିବେଳକୁ ସନ୍ଧ୍ୟା ଦେବୀ ମଳୟବାବୁଙ୍କ କାନ୍ଧ ଉପରେ ଓଠକୁ ଚାପିରଖି ଅଶ୍ରୁମୋଚନ କରୁଥିଲେ ନିଜ ଅତୀତର ସ୍ମୃତିରୋମନ୍ଥନ କରି ।



# ବିଶ୍ୱର ବଳଦ

ଯେଉଁ ଗାଁ ନଈ କୂଳରେ ବସିଥିବା ସେପାରିକୁ ଚାହିଁ ଚାହିଁ ଜୀବନର ସବୁ ସୁଖ ଦୁଃଖ ବିତାଇ ଦେଇଛି, ଯେଉଁ ଗାଁର ଖୋଲା ସବୁଜ ପ୍ରାନ୍ତରେ ସନ୍ଧ୍ୟା ଶଶୀ ଦେଖି ମନ ଉଲ୍ଲସିତ ହୋଇ କେତେ କଳ୍ପନାମୟ ଛବି ଆଙ୍କି ନିଜେ ଆତ୍ମ-ହରା ହୋଇଛି । ବାଦାମୀ ଅମ୍ବବନରେ ବୁଲବୁଲି ଜୀବନର କେତେ ମଧୁମୟ ଗୀତ ଗାଇଛି । ହଠାତ୍ ବିଦେଶ ବାହୁଡ଼ା ଜୀବନନେଇ ସେହି ପରିଚିତ ଜନ୍ମ ଭୂଇଁକୁ ଫେରି ଆସିଲେ ମନହୁଏ ସବୁ ଏଥିରୁ ଆପଣାର କରିନେବା ପାଇଁ । ଅତୀତ ଜୀବନରେ ଯାହା ସବୁ ଥିଲା ସତ୍ୟ, ମଧୁର, ଅନୁଭବମୟ, ଆଜି ସେ ସବୁ କାହିଁ ? ସେ ନଈ ବହି ଯାଉଛି; ନଈ ସେପାରିର ଗାଁ ସେମିତି ଅଛି । ସେହି ସୂର୍ଯ୍ୟ ସେମିତି ଆଜି ସେପାରିର ନୂଆଁଣିଆ ଗଛଙ୍କର ଛୁଇଁ ଢଳି ପଡୁଛି । କେଉଁ କାଳରୁ ନଈ ଆମ୍ବ ତୋଟାର ସେହି ଝଙ୍କା ବରଗଛଟା ସେମିତି ଛିଡ଼ାହୋଇଛି । ତା'ର ଉପରେ କେତେ ଜାତି ପକ୍ଷୀଙ୍କର ସଭା ସମିତି ସେମିତି ଆଜିବି ବସୁଛି । ଗାଈଆଳ ଟୋକାର ଗୋଧନ ବାହୁଡ଼ା ବଂଶୀର ସ୍ୱର ଆଜି ସେମିତି ଶୁଭୁଛି କିନ୍ତୁ ଆଜି ଶୁଭୁନାହିଁ ତା'ର ମା'ର ଚେହ୍ଲାଳିଆ ଡ଼ାକ, ଶୁଭୁ ନାହିଁ ତା'ର ପ୍ରାଣପ୍ରିୟାର ଡ଼ାକ । ଅର୍ଦ୍ଧ ପାଗଳ ଚଇତା ତାର ଭଙ୍ଗା କୁଡ଼ିଆ ଢିଅ ଉପରେ ମୁଣ୍ଡରେ ହାତଦେଇ କଇଁ କଇଁ ହୋଇ କାନ୍ଦୁଥିଲା, ଖାଲି କାନ୍ଦୁଥିଲା ।

ଚଇତା !

ଚଇତା ବେହେରା, ଏଇ ହରିପୁର ଗାଁର ପୁଅ । ଚାଷୀର ପୁଅ ସେ କୃଷି ତାର ଚଉଦ ପୁରୁଷର ବଂଶାନୁ ବଂଶିକ ଜୀବିକା ।

ତା'ର ଠିକ୍ ମନେ ଅଛି, ବୋଉ କହୁଥିଲା, ଯେଉଁଦିନ ଚଇତା ଜନ୍ମ ହେଲା, ତାର ମାସ କେଇଟା ଭିତରେ ବାପା ତାର ମରିଗଲା । ମରିଗଲା ନୁହେଁ ତ ତରିଗଲା । ଅଭାବ ଲୋକ ବେଶୀଦିନ ବଞ୍ଚିଲେ ସିନା କଷ୍ଟ ପାଇବ

ମା' କେଶ ଚଇତାକୁ କୋଳେଇ କାଖେଇ ମଣିଷ କଲା । ମଣିଷ କଲାନି ତ ଭେଣ୍ଡିଆଟିଏ କଲା, ଅଲ୍ପପାଠ ଦି'ଅକ୍ଷର ପଢେଇଲା । ହାଇସ୍କୁଲ ପର୍ଯ୍ୟନ୍ତ ଯାଇ ନଥିଲେ ବି ଗାଁ ଗୃହଶାଳୀରେ ତାର; କଳ, ନଳ, ଅଣ୍ଟ ବରଗଛ ଆଗପଛ ଠାରୁ ନାଁ । ଗାଁ । ଥାନା ଜିଲ୍ଲା କୋଇଠା ଠିକ୍ ସାବ ଲେଖି ପାରୁ-ଥିଲା ।

ଚଇତା ଭେଣ୍ଡିଆଟିଏ ହେଲା । ମା'ର ଦୁଃଖ ସରିଲା । ଗାଁ ସାହୁ-କାର ଜମିଦାର ହରିଲାଲ ଗୁପ୍ତା ରାୟବାହାଦୁରଙ୍କ ପାଞ୍ଚମାଣ ଜମିକୁ ଚଇତା ଭାଗ ଚାଷ କରେ । ମା' ପୁଅଙ୍କ ଧାନ ଫସଲ ବର୍ଷକ ପାଏନି । ବଇଶାଖ ଶେଷ ତିନମାସ ସାହୁକାରଠାରୁ ଧାନ ଉଧାର ଆଣେ । ସୁଧ ମୂଳ ମିଶି ପୁଣି ଧାନ ଅମଳ ବେଳକୁ ଶୁଝି ଦିଏ ।

ଚଇତା ମା' ବୁଢ଼ୀ ହେଲାଣି । ଏବେ ତା ଆଖିକୁ ଭଲ ଦିଶୁନି, ବୁଢ଼ୀର ଏକା ଜିଦ ଚଇତାକୁ ବୁଢ଼ୀ ଦିନେ ଆଉ ରୋଷେଇ କରି ଗଣ୍ଡେ ସେ ଦେଇପାରିବନି । ହାତକୁ ଦି' ହାତ ଯେମିତି ହେଲେ କରି ଦେଲେ ତା' ଦୁଃଖ ସରିବ । ପୁଣି ପୁଅକୁ ବି ବୟସ ହେଲାଣି ।

ବାହା ହେବାପାଇଁ ଟଙ୍କା ବା ପାଇବ କେଉଁଠୁ । ଗାଁ ସାହି ପଡିଶାକୁ ଗଣ୍ଡେ ଖାଇବାକୁ ନଦେଲେ, ବନ୍ଧୁ ବାନ୍ଧବଙ୍କୁ ଖଣ୍ଡେ ନୂଆ ଲୁଗା ନଦେଲେ ଚଳିବ କେମିତି ?

ସାହୁକାର ଠାରୁ ୫୦ ଗୌଣି ଧାନ, ପାଞ୍ଚଶ ଟଙ୍କା କରଜ ଆଣି ଗାଁ ଆର ପାରି ଆମ୍ବ ତୋଟାର ମାଲିକ ମଦନ ମହାନ୍ତିଙ୍କ ଝିଅ ଚମ୍ପାକୁ ବାହା ହେଲା, ଚଇତା ଗାଁ ଲୋକଙ୍କୁ ପେଟ ପୂରେଇ ଭୋଜନଟିଏ ଦେଲା ।

× × ×

ଚଇତା, ବିବାହିତ, ତା ପାଖରେ ଦୁହିତା ଚମ୍ପା । ଚଇତା ମା' ପାଇଛି ଗୃହଲକ୍ଷ୍ମୀ ଚଇତାର ପ୍ରାଣପ୍ରିୟା ଚମ୍ପା । ଚମ୍ପା ବୟସ ତାର ଷୋହଳ କି ସତର, ସୁନ୍ଦର ଗଢଣ ହସିଲା ହସିଲା ମୁହଁ । ସେ ହସିଲେ

ଦୁନିଆ ହସେ, ଟଗର ଫୁଲ ତା ହସରେ ତାଳ ମାରନ୍ତି । ତା' ପିଲାଦିନ କଥା, ଧଳିଆର ତିଆଶର କଥା, ଜମିଦାର ସାହୁକାର ରାୟବାହାଦୁରର ପୁଅ ସାଙ୍ଗେ ଲୁଚକାଳି ଖେଳ, ସେ ସବୁ ତା'ର ପ୍ରିୟତମ ପାଖରେ ବଖାଣି ହୁଏ । ଏମିତି ଦିନ କେଇଟା ଖୁସିରେ କଟିଗଲା ।

ଦିନେ ଉଦୁଉଦିଆ ଖରାବେଳେ ସାହୁକାର ପିଆଦା ଦାମ ପହଞ୍ଚିଲା ।

'କଲେ ଚଇତା ମା' ଏ ପର୍ଯ୍ୟନ୍ତ ଧାନ, ଟଙ୍କା ଦେବାକୁ ଗଲୁନାହିଁ । ଆଗି ବର୍ଷେ ପୂରିଲା, ସାଆନ୍ତେ ପଠେଇଛନ୍ତି ଆଜ ସୁଧ ମୂଳ ସବୁ ତତେ ଦେବାକୁ ହେବ ।

ଚଇତା ବିଲରୁ କାନ୍ଧରେ ଲଙ୍ଗଳ ହାତରେ ପାଞ୍ଚଣ ଧରି ଫେରୁଥିଲା ।

ଚଇତା ମା ମୁଣ୍ଡରେ ବଜ୍ର ପଡ଼ିଲା ।

ପିଆଦା ବାବୁ ଏ ସାଲର ଧାନ ମରୁଡ଼ି ପଡ଼ିଲା । ଏଇ ଥରକ ଧାନ ଅମଳ ହଇଲେ ସୁଧ ମୂଳ ସବୁନେଇ ଦେଇ ଆସିବି ।

ଉତ୍ତର ଦେଲା ଚଇତା ମା' ।

ଆଜ ତତେ ସୁଧ ମୂଳ ସବୁ ଦେବାକୁ ପଡ଼ିବ । ନଚେତ୍‌ ଚାଲ ସାଆନ୍ତ ଙ୍କ ପାଖକୁ ।

ଚଇତା ଏଥିରେ ରାଜିହୋଇ ଦାମା ପିଆଦା ସାଙ୍ଗରେ ସାଆନ୍ତ ଙ୍କ ପାଖକୁ ଗଲା । ମହାଜନ ଙ୍କ ଦାଣ୍ଡ ଦୁଆରେ ବସି ବାଡ଼ ଠାଣୁଥିଲା ଚଇତା ।

ଦାଣ୍ଡ ଦୁଆରେ ସାଆନ୍ତ ଙ୍କ ପୁଅ ସୀତାରାମ ।

ସାନ ସାଆନ୍ତ ଙ୍କୁ ଦେଖି କରଯୋଡ଼ ଶାଷ୍ଟାଙ୍ଗ ପ୍ରଣାମ କଲା ଚଇତା ।

ସୀତାରାମ ଚଇତାକୁ ଚାହିଁଲେ ।

ଚଇତା କହିଲା, ଯାଅନ୍ତେ ମୁଁ ଚଇତା— ସେଇ ନଈ ଆରପାଖରେ ଯେଉଁ ଆମ୍ବତୋଟା ଅଛି ତା ମାଲିକ ମଦନ ମହାନ୍ତି ଙ୍କ ଝିଅକୁ ବାହା-ହେଉଛି । ଚମ୍ପାକୁ । ସେଥିପାଇଁ ଧାନ, ଟଙ୍କା କରଜ ନେଇଥିଲି ଯେ ମତେ ଆପଣଙ୍କ ପିଆଦା ଧରି ଆଣିଛି ସାଆନ୍ତ ଙ୍କ ପାଖକୁ ।

ଏକା ନିଶ୍ବାସରେ କହିଗଲା ଚଇତା ।

ତାହେଲେ ଏଇ କାଳିଆ ଝୁଣ୍ଟେଣ୍ଡ ଟୋକାଟା— ଚମ୍ପାକୁ ବାହା ହେଉଛି ?

ତୁ ଚଇତା ଟଙ୍କା ପଛରେ ଦେବୁ । ମୁଁ ବାପାଙ୍କୁ କହିଦେବି ।

ଓଲଗି ହୋଇ ଫେରିଲା ଚଇତା ।

ପଛରୁ ଡାକିଲେ ସୀତାରାମ—
ହଁ ଶୁଣ, ମୁଁ କେବେ ଗଲେ ତମ ଘରବାଟେ ବୁଲି ଆସିବି । ଚମ୍ପା ତ ମୋ ପିଲାବେଳର ସାଥି, ସେ କେମିତି ଅଛି ?

ଭଲ ଅଛି ଆଜ୍ଞା, ଚଇତା ଉତ୍ତର ଦେଲା ।

×　　　×　　　×

ବନ୍ୟା, ବାତ୍ୟା, ମରୁଡ଼ି, ଦୁର୍ଭିକ୍ଷ ଏହି ଉତ୍କଳ ଜନନୀକୁ କାଳେ, କାଳେ ଲୁଣ୍ଠନ କରି ଆସିଛି । ସେ ବର୍ଷ ଦେଶସାରା ମରୁଡ଼ି ଦେଖାଦେଲା । ଧାନ କିଆରୀରେ ଗାଈ ଗୋରୁ ଚରିଲେ । ଚଇତା କପାଳ ଫାଟିଲା । ସେ ଫଟା କପାଳ ବେଳେ··· ଦିନେ ଦିନ ରତରନ୍ତ ବେଳେ ସୀତାରାମ ବାବୁ ସେଇ ବାଟଦେଇ ଯାଉଥିଲେ ।

ଦାଣ୍ଡ ଦୁଆରେ ଚଇତା ବସିଥିଲା ।

ସେଇଠି ନିଜ ସାଇକେଲଟି ଅଟକାଇଲେ ସୀତାରାମ ବାବୁ ।

ସାନ ସାଆନ୍ତଙ୍କୁ ଦେଖି ଚଇତା ମୁଣ୍ଡିଆ ମାରିଲା ।

— କିରେ ଚଇତା କ'ଣ ଖବର ଭଲ ?

— ଆପଣଙ୍କ ଦୟାରୁ, ଚଇତା ଉତ୍ତର ଦେଲା ।

ଚଇତା ଘର ଆଡ଼କୁ ଆସିଲେ ସୀତାରାମ ।

ଚଇତା ମା' ସୀତାରାମଙ୍କୁ ପ୍ରଣାମ ହେଲା ।

ଚମ୍ପା ଘର ଭିତରୁ ଚାଲି ଆସି ଦୁଆର ଉହାଡ଼େ ଥାଇ ଚଇତା ହାତକୁ ବଢ଼େଇ ଦେଲା ।

ସଉପ ଉପରେ ବସୁବସୁ ଚମ୍ପା ହାତ ଲମ୍ବର ଓଢ଼ଣା ଦେଇ ସୀତାରାମଙ୍କୁ ପ୍ରଣାମ ହେଲା ।

ଚଇତା ତା ଦୁଃଖ ସୀତାରାମଙ୍କୁ କହିଲା । ମରୁଡ଼ିରେ ତାର ସବୁ ଫସଲ ଉଜୁଡ଼ି ଯାଇଛି । ସେ ଏ ସାଲ ଧାନ ଟଙ୍କା ଦେଇ ପାରିବ ନାହିଁ । ସୀତାରାମ କହିଲେ, ତୁ ବ୍ୟସ୍ତ ହୋନା ଚଇତା ଏ ସାଲ ନହେଲେ ଆର ସାଲକୁ ଟଙ୍କା ଦେଇଦେବୁ । ନିଜ ପ୍ୟାଣ୍ଟ ପକେଟରୁ ପଚିଶ ଟଙ୍କିଆ ନୋଟ୍‌ଟିଏ କାଢ଼ି ଚଇତା ହାତରେ ଧରାଇ ଦେଇ କହିଲେ— ଏଇ ନେ ଏ ଟଙ୍କା ରଖ, ଚମ୍ପା ପାଇଁ ଭଲ ଶାଢ଼ୀ ଖଣ୍ଡେ କିଣିବୁ । ହଁ ଏ ଟଙ୍କା ତୁ ଶୁଝିବା ଦରକାର ନାହିଁ ।

— ଚଇତା ଥଙ୍ଗଥଙ୍ଗ ହେଉଥିଲା । ସୀତାରାମ ବାଧ କରିବାରୁ ସେ ଟଙ୍କା ରଖିଲା ।

ଦୁଆର ବନ୍ଧରେ ଛିଡ଼ାହୋଇ ଚମ୍ପା ଅପଲକ ନୟନରେ ଚାହିଁ ରହିଥିଲା ସୀତାରାମ ଆଡ଼କୁ । କ୍ଷଣକ ପାଇଁ ଚାରି ଚକ୍ଷୁର ମିଳନ ଘଟିଲା ।

— ବାବୁ ଆପଣଙ୍କ ଋଣ ମୁଁ ମଲା ପର୍ଯ୍ୟନ୍ତ ସୁଝି ପାରିବିନି ।

— ଆରେ ଏଥିରେ କ'ଣ ଅଛି । ଚମ୍ପା ତ ମୋର ପିଲା ଦିନର ସାଙ୍ଗ । ମୁଁ ଏଇ ବାଟଦେଇ ଆସିବି ଆସିବି ବୋଲି ଆସିପାରୁ ନଥିଲି । ହଉ ମୁଁ ଯାଉଛି । ପୁଣି କେବେ ସୁବିଧା ହେଲେ ଆସିବି ।

— ଚଇତା ପୁଣି ଉଲଙ୍ଗ ହେଲା ।

ସୀତାରାମ ଚାଲିଗଲେ ।

\+ + +

ଅଦିନ କୁହୁଡ଼ି ଆସିଲା ଚଇତା ଘରରେ । ଦାମା ପିଅଦା ଆସି ହେଇଛନ୍ତି । ଅଜି ଟଙ୍କା, ସୁଧ ସବୁ ନେବ । ନଚେତ୍ ଘରଡ଼ିହ କ୍ରୋକ୍ ହେବ ।

ଦାମା ପିଅଦା କହିଲା— ମୋତେ ସାଆନ୍ତେ ପଠାଇଛନ୍ତି । ସାନ ସାଆନ୍ତେ ତ ଘରର ମୂଲିଆ ନୁହନ୍ତି । ଅଜି ଟଙ୍କା ଦେ ନହେଲେ କେଉଁଠୁ ବନ୍ଧାଦେଇ ଟଙ୍କା ଆଣ୍ ।

ଏ ବର୍ଷ ମରୁଡ଼ି ହେଲା । ଫସଲ ତ ଅମଳ ହେଲାନି । ଆର ସାଲକୁ ଦେବ ।

ପିଅଦା ରାଗିଯାଇ କହିଲା— ପଇସା ନାହିଁ ତ ବାହାହେଲା ବେଳକୁ ତ ଭାରି ଶକଶକ ଲାଗୁଥିଲା । ଘରେ ଷୋଳ ବର୍ଷୀ ଘରଣୀ ରଖି ବସିଛୁ କାହିଁକି ? ମାଇକିନାକୁ ଭଡ଼ା ଲଗେଇ ଦେଉନୁ ।

ଝରକା ଫାଙ୍କରେ ଚମ୍ପା ଏ ସବୁ ଶୁଣୁଥିଲା ।

ଚଇତା ଦେଖିଲା ଚମ୍ପା ଏସବୁ ଶୁଣୁଛି । କୌଣସି ସ୍ୱାମୀ ନିଜ ସ୍ତ୍ରୀ ର ଉପସ୍ଥିତିରେ ସ୍ତ୍ରୀ ପ୍ରତି ଭର୍ତ୍ସନା କେହି ସହି ପାରେନା । ଲଜ୍ୟା କ୍ରୋଧରେ ପାଖରେ ପଡ଼ିଥିବା ଠେଙ୍ଗାରେ ଦି ପାହାର ପକାଇଲା ଚଇତା, ପିଅଦା ବାବୁଙ୍କୁ ।

ଚଇତା ମୁଣ୍ଡରେ ଭୂତ ପଶିଲା ।

ସେଇ ଚିରା ଲୁଗାଟା ପିନ୍ଧି ଅଣ ନିଶ୍ୱାସୀ ହୋଇ ଦୌଡ଼ିଲା କେଉଁ ଏକ ଅଜଣା ପଥରେ ।

ଏହାପରେ ବି ସୀତାରାମ ପ୍ରାୟ ପ୍ରତିଦିନ ଚଇତା ଘରକୁ ଆସନ୍ତି, ଭଲ ମନ୍ଦ ଖବର ବୁଝନ୍ତି । ଚମ୍ପା ତାର ପିଲାବେଳରେ ସାଥି ବୋଲି ତା'-ସହିତ ଥଟ୍ଟା ମଜ୍ଜା କରନ୍ତି । ଏସବୁ ଦେଖି ଚଇତା ମା' କିଛି ବୁଝିପାରେନା । ଯେ ଏତିକି ବୁଝେ ସାନ ସାଆନ୍ତେ ଗରିବର ମା' ବାପ, ତାଙ୍କ ସୁଖ ଦୁଃଖର ସାଥି ଆଜି ଚମ୍ପାର ପିଲାବେଳର ସାଙ୍ଗ । ଚଇତା ମା' ସାନ ସାଆନ୍ତଙ୍କ ଦୀର୍ଘଜୀବନ କାମନା କରେ—ଈଶ୍ୱରଙ୍କ ପାଖରେ ।

କିନ୍ତୁ ଚମ୍ପା, ସେ ସବୁ ବୁଝିପାରେ, ଜଣେ ଅବିବାହିତ ଯୁବକର ଆଶା ଆକାଂକ୍ଷା । ସେ ନାରୀ, ନାରୀର ମନ ଗୋଟିଏ ମନ୍ଦିର, ସେ ମନ୍ଦିରରେ କେବଳ ଜଣେ ଦେବତାର ସ୍ଥାନ ଥାଏ । କିନ୍ତୁ ଯେତେବେଳେ ସେଠାରୁ ଦେବତା ଅନ୍ତର୍ଦ୍ଧାନ ହୋଇଯାଏ, ତାହା ଆଉ ମନ୍ଦିର ହୋଇ ରହେନା, ହୋଇଯାଏ ଗୋଟିଏ ଭୂତ କୋଠି । ସେ ଭୂତ କୋଠିରେ ଅତୃପ୍ତ ଯୌନ-ଲାଳସା ନୁପୁର ପିନ୍ଧି ନାଚୁଥାଏ । ସେ ନୁପୁରର ରୁଣୁଝୁଣୁ ଶବ୍ଦ ଶୁଣିବାକୁ ସତେ କଣ ସାନ ସାଆନ୍ତେ ଯୋଗ୍ୟ ?

ଚମ୍ପା ପ୍ରେମର କାଗଜ ଡଙ୍ଗା ଦରିଦ୍ରର ଚହଲ ନଈରେ ଭସି-ଯାଇଛି ! ତାର ସୁନେଲି ସପନ ଝଙ୍କୃ ଚୂରମାର ହୋଇଯାଇଛି । ଚଇତାର ଫେରିବା ବାଟକୁ ଚାହିଁ ଚାହିଁ ଆଖି ଲୁହ ଆଖିରେ ମରିଛି । ମାସେ ଦି' ମାସ ନୁହେଁ ବର୍ଷେ ହେବ କେଉଁଆଡ଼େ ଯାଇଛି ଚଇତା ଘରକୁ ଫେରିନି, ଫେରିବ କି ନାଁ କିଏ କହିବ ?

ଦାରିଦ୍ର୍ୟର ସୀମାରେଖା ତଳେ ବଞ୍ଚିରହି ଏକ ମାତ୍ର ସାହାଭରସା ସୀତାରାମ । ଚମ୍ପାର ଦୁଃଖ ସୁଖର ସାଥି ଜଠର ଜ୍ୱାଳାକୁ ମୋଚନକାରି ସୀତାରାମ ବାରମ୍ବାର ଚମ୍ପାଠାରୁ ଚାହିଁଛି ନଜର ଯୌନ କ୍ଷୁଧାକୁ ମେଣ୍ଟା-ଇବା ପାଇଁ କିନ୍ତୁ ଏସବୁ ଆଡ଼େଇ ଦେଇଛି ଚମ୍ପା । ସେ ଗୋଟିଏ ଘରର କୁଳବଧୂ, ତା' ମଥାରେ ସିନ୍ଦୂର, ହାତରେ ଶଙ୍ଖା, ସେ କିଟପି ହେବ କପଟି ?

+ + +

ଗୋଟିଏ ଜ୍ୟେଷ୍ଠ ସନ୍ଧ୍ୟା । ଶୀଭୁଆ ମନରେ ଶୋଇରହି ଭାବୁଥିଲି ଚମ୍ପା । ଏଇ ସୀତାରାମ କଥା । ତା' ପିଲାଦିନର କଥା । ସୀତାରାମ ତା'ର ଖେଳ ସାଥି । କେତେଥର ଶହଦିନ ତାଙ୍କ ଆମ୍ବତୋଟାରୁ ଅମ୍ବ ଗୋଟାଇ ସୀତାରାମକୁ ଦେଇଛି । ବର୍ଷାରେ ଗାଁ ଦାଣ୍ଡରେ କାଗଜ ଡଙ୍ଗା ଭସାଇଛି । ଶୀତରେ ସାଆନ୍ତଙ୍କ ବାଡ଼ି ପୋଖରୀରୁ କଇଁଫୁଲ ତୋଳିଛି, ବସନ୍ତରେ ବଉଳ ଫୁଲରେ ହାର ଗୁନ୍ଥିଛି, ପାଠଶାଳାରୁ ସୀତାରାମ ସାଙ୍ଗରେ ଲୁଚିଲୁଚି ଯାଇ କଅଁଳ ଗଛରୁ କାଇଞ୍ଚ କୋଳି ଖାଇଛି, ତରାଟ ବଣରୁ କଙ୍କି ଧରିଛି, ଆଜି ଆଜି ସେଇ ସୀତାରାମ ତାକୁ ବଞ୍ଚିବାପାଇଁ ଦାନା, ପିନ୍ଧିବାପାଇଁ କନା ଯୋଗାଇ ଦେଉଛି । ଦୁଃଖବେଳରେ ଏଇ ଦେହଟାକୁ ସେଇ ସେ ତାର କ୍ଷୁଧା ମେଣ୍ଟାଇବା ପାଇଁ ଚାହୁଁଛି । ସେ କଣ କରିବ ? ତାକୁ ଏ ଦୁନିଆଁରେ ଅନ୍ଧୁଣୀ ଶାଶୁ ବୁଢ଼ୀକୁ ନେଇ କେତେଦିନ ବଞ୍ଚିବାକୁ ହେବ ? ମନ ବିବେକ ମଧ୍ୟରେ ଦ୍ୱନ୍ଦ, କଣ କରିବ ?

ଠିକ୍ ଏଇ ସମୟରେ କବାଟ ଠକ୍ ଠକ୍ ହେଲା, ଦୁଆର ଖୋଲିଲା ଚମ୍ପା ।

ସାନ ସାଆନ୍ତେ !

ଜ୍ୟେଷ୍ଠ ସନ୍ଧ୍ୟାରେ ବି ଅଦିନିଆ କଳା ମେଘଟା ସେତେବେଳେ ମାଡ଼ି ଆସୁଥାଏ ।

ବର୍ଷା ଆସିଗଲାଣି । ଭାବିଲି ଏଇଠି ଟିକେ ଅଟକିଯିବି । ଉତ୍ତର ଦେଲେ ସୀତାରାମ ।

ବର୍ଷା ସେତେବେଳକୁ ଆରମ୍ଭ ହୋଇଗଲାଣି । ରଇତା ମା' କହିଲା ସାନ ସାଆନ୍ତଙ୍କୁ ରାତିଟା ସେଇଠି ଅଟକିଯିବାକୁ । ସୀତାରାମ ବି ଅମଙ୍ଗ ହେଲେନି । ଚମ୍ପା ସାନ ସାଆନ୍ତଙ୍କ ପାଇଁ ରୋଷେଇକରି ଖାଇବାକୁ ଦେଲା ।

ବାହାରେ ବର୍ଷା, ସୀତାରାମଙ୍କ ଯୁବପ୍ରାଣ ଉନ୍ମାଦ ହୋଇ ଉଠିଲା । ସେ ଚମ୍ପା ପାଖକୁ ଯାଇ ନରମ ଗଳାରେ ଡାକଲେ, ଚମ୍ପା...

—ଉଁ ।

—ବୁଢୀ ଶୋଇଲାଣି ।

—ହଁ ।

—ମୋ କଥା ।

—କି କଥା ?

—ଉତ୍ତର ଆଲୁଅକୁ ଲିଭାଇଦେଲେ ସୀତାରାମ । ରାତିର ଘନ ଅନ୍ଧକାରର କେତୋଟି ମୁହୂର୍ତ୍ତରେ ଚମ୍ପା ହେଲା ବନ୍ଦିନୀ । ସୂର୍ଯ୍ୟୋଦୟ ପୂର୍ବରୁ ଚମ୍ପାର ମହକ ନଥିଲା ।

ଲୁଣ୍ଡ ବାଇଦ ସହସ୍ର କୋଶ । କଥା ରହେନା । ସୀତାରାମ ଚମ୍ପାକୁ ନେଇ ଗାଁ ସାହିରେ ମିଛ ସତ ଲଗାଇ ନାନା ଗୁଜବ ଉଠିଲା- ବେଳେ ଚଇତା ମା' ଅଣ୍ଟାରେ ଲୁଗା ଗୁଡେଇ ଗାଁ ମାଇପଙ୍କ ପାଖରେ କଳକରେଣି ଝାଡାବାନ୍ତିଆ, ଅଳପେଇସା, ରାଣ୍ଡି ଖଣ୍ଡି, ଝାଡ଼ା ବାନ୍ତି, କାଠଗଛ, ନିଆଁ ଚୁଲି କେତେ କଣ କହିଯାଏ । ଚମ୍ପାର ଗାଁ କଥାକୁ ଭ୍ରୂକ୍ଷେପ ନଥାଏ । ଗାଁ ଲୋକ ଦେବେ ନା ନେବେ ।

ଚମ୍ପା, ଦୁନିଆଁ ଦାଣ୍ଡରେ କାଦୁଆଭରା ପିଚ୍ଛିଳ ରାସ୍ତାରେ ପାଦ- ଟିପି ଟିପି ଚାଲିବାର ଅଭ୍ୟାସ ତାର ନାହିଁ । ନାରୀ ଜୀବନରେ ଆସେ ପ୍ରେମର ବସନ୍ତ, ମନ ଖୋଜେ ସାଥି, ଦେହ ଚାହେଁ ମିଳନ, ଅମାନିଆଁ ମନ ନମାନି ଓଳେଇ ଗାଈପରି ଦଉଡ଼ା ଛିଣ୍ଡାଏ । ଗାଈ ଥରେ ବାଡ ଡେଇଁ ଘାସ ଖାଇଲେ ସେଥିଲେ ଯେଉଁ ମଜ୍ଜା ଅଛି ତାହା କେବଳ ଜାଣିଥିଲା ଚମ୍ପା ଆଉ ସୀତାରାମ । ଯୌବନର ଉଚ୍ଛୁଳା ନଈରେ ପ୍ରୀତିର ତରଣୀ ମେଲିଦେଇଛି ଚମ୍ପା । ସେ ଭୁଲିଯାଇଛି ସମାଜ, ସଂସାର, ନ୍ୟାୟ-ଅନ୍ୟାୟ, ନିଜ ଅଜା- ଣତରେ ସେ ସର୍ବସ୍ୱ ଅଜାଡ଼ିଦେଇ ସର୍ବସାନ୍ତ ଚମ୍ପା ହୋଇଛି ଅନ୍ତସତ୍ତ୍ୱା ।

ଯାନି ଯାଆନ୍ତେ ।

ଊଁ ।

ଏମିତି ଆଉ କେତେଦିନ ?

ତୁ ବ୍ୟସ୍ତ ହୋନା ଚମ୍ପା । ଚଇତା ଆଉ ଫେରିବନି । ମୁଁ ତତେ ନିଶ୍ଚୟ ବାହାହେବି ।

ମୋ ପେଟରେ ଯେ ତମର ସନ୍ତାନ !

ଏଁ ! ଚମକି ପଡିଲେ ସୀତାରାମ !

ସୀତାରାମ ଚମ୍ପାର ଗର୍ଭବତୀ ହେବା ଜାଣିବା ପରେ ଏହାର ସମାଧାନ ପାଇଁ ଚିନ୍ତା କରିଥିଲି । ଯେନତେନ ପ୍ରକାରରେ ଚମ୍ପାକୁ ହଟାଇ ନଦେଲେ ଯେ ସର୍ବନାଶ ଏକଥା ସେ ଜାଣିଥିଲି । ଛଳନାକରି ଚମ୍ପାକୁ କହିଲି, ସେ ଚମ୍ପାକୁ ନିଶ୍ଚୟ ବିବାହ କରିବ । କିନ୍ତୁ ଏଥିରେ ତାର ବାପା, ବୋଉ ରାଜି ହେବେନି । ତେଣୁ ସାଥି ହୋଇ ସେ କଲିକତା ଚାଲିଯିବେ । ସେଇଠି ସୀତାରାମ ଚାକିରି କରିବ । ଦୁହେଁ ଖୁସିରେ ରହିବେ । ଆଉ ଏଇ ଅନ୍ନପୂର୍ଣ୍ଣୀ ଶାଶୁ ? ସେ କଥା ପରେ କିଏ ?

ନିଝୁମ ରାତି । ସେ ରାତିର ଏକମାତ୍ର ସାଥୀ ସୀତାରାମ । ସୀତାରାମ କଥାରେ ଘରୁ ପାଦକାଢ଼ିଲି ଚମ୍ପା କେଉଁ ଏକ ନର୍କ ଆଡକୁ ।

ଷ୍ଟେସନରେ ପହଞ୍ଚିଲି ବେଳକୁ ପୁରୀ କଲିକତା ଏକ୍ସପ୍ରେସ୍ ଷ୍ଟେସନରେ ପହଞ୍ଚି ଯାଇଥାଏ । ସୀତାରାମ, ଚମ୍ପା ଗାଡ଼ି ଚଢ଼ି ଚାଲିଗଲେ । ବାଟରେ କେଉଁ ଏକ ଷ୍ଟେସନ ପାଖରେ ପାଣି ଆଣିବା, ଖାଇବାକୁ ଆଣିବା ବାହାନାରେ ସୀତାରାମ ଓହ୍ଲାଇଗଲେ ଯେ ଆଉ ଫେରିଲେନି । ଟ୍ରେନ ଛାଡ଼ିଲା, ସୀତାରାମନ ଦେଖାନାହିଁ । କ'ଣ କରିବ ଚମ୍ପା ! କେବଳ ବିକଳ କ୍ରନ୍ଦନ ବ୍ୟତୀତ ତାର ଅନ୍ୟ ଉପାୟ ନଥିଲା ! ଚମ୍ପା ଭଲଭାବେ ଜାଣିଗଲାଯେ

ସୀତାରାମ ତାଙ୍କୁ ପ୍ରତାରିତ କରିଛି । ତା' ଗର୍ଭରେ ସୀତାରାମର ସନ୍ତାନ ଚନ୍ଦ୍ରକଳା ପରି ବୃଦ୍ଧି ପାଉଛି । ଏକଥା ସୀତାରାମ ଆଗରୁ ଜାଣିଥିଲା ।

ଗୋଟିଏ ଷ୍ଟେସନ୍‌ରେ ଓହ୍ଲାଇଲା ଚମ୍ପା । କ'ଣ କରିବ । ଗାଁରୁ ଅଲକ୍ଷଣୀ ଶାଶୂ ପାଖରେ ବିଶ୍ୱାସଘାତକତା କରି ସେ ସବୁ ସମ୍ପର୍କ ଛୁଟାଇ ଦେଇଆସିଛି । ବିଗତ୍ମାନ ପଥ ଅତିକ୍ରାନ୍ତ କରିବା ପାଇଁ ତା' ପାଖରେ ସମସ୍ତ ବହୁତ କିନ୍ତୁ ସମ୍ବଳ ନାହିଁ । ଏଣୁ ପରି ଏକ ଅବସ୍ଥାରେ ଏକାକମ ରେଳ ଷ୍ଟେସନରେ ବସିଥିବା ବେଳେ କେତେକ ଲମ୍ପଟ ଲୋକଙ୍କ ଦୃଷ୍ଟିକୁ ସେ ମଧ୍ୟ ଅସିଚ ; କିନ୍ତୁ ସମସ୍ତ ଏଣେତେଣେ ଇତସ୍ତତଃ ହୋଇ ବୁଲୁଥିବା ବେଳେ ଜଣେ ୩୦।୩୨ ବର୍ଷ ବୟସର ଯୁବତୀ ସେଠାରେ ପହଞ୍ଚି ଚମ୍ପାକୁ କହିଲେ— ଝିଅ ତୁ ଏତେ ରାତିରେ ଏଠାରେ ବସିଛୁ କାହିଁକି ? ତୋ ଘର କେଉଁଠି ? ସ୍ତ୍ରୀ ଲୋକଟିର ଦରଦୀ କଥା କେଇପଦ ଶୁଣି ଚମ୍ପା ତା'ର ଗୋଡ଼ତଳେ ପଡ଼ିଯାଇ ସବୁ ଦୁଃଖ କହିଲା । ସ୍ତ୍ରୀ ଲୋକଟି ଚମ୍ପାର ଦୁଃଖରେ ଆଖିରୁ ଲୁହ ଗଡ଼ାଇ ଚମ୍ପାକୁ ଆଶ୍ୱାସନା ଦେଇ, ଚମ୍ପାକୁ ନେଇ ଜଳଖିଆ ଖାଇବାକୁ ଦେଇ କହିଲା, ଝିଅ ତୁ ଚିନ୍ତା କରନା । ତୁ ଆଜିଠାରୁ ମୋର ଝିଅ ହୋଇ ମୋ ଘରେ ରହିବୁ । ଚାଲ ଏଇ ଷ୍ଟେସନ ସେପଟେ ମାଳିସାହିରେ ମୋ ଘର, ମୋ ଘରକୁ ଚାଲ ।

ନଈରେ ଭାସି ଯାଉଥିବା ଲୋକଟି କୁଟା କାଠିଟାଏ ପାଇଲେ ବି ଯେପରି ବଞ୍ଚିବା ପାଇଁ ଆଶା ଖୋଜେ, ଚମ୍ପା ଆଗପଛ ଚିନ୍ତାନକରି ସେଇ ସ୍ତ୍ରୀ ଲୋକ ସାଥିରେ ଗଲା ।

ସ୍ତ୍ରୀ ଲୋକଟି ସେ ସାହିରେ କମଳା ବାଈ ନାମରେ ପରିଚିତା । ସମସ୍ତଙ୍କ ମୁହଁରେ କମଳାବାଈ । ଚମ୍ପା ଏସବୁ କିଛି ବୁଝି ପାରିଲାନି । ସବୁ ପାଗରେ ଲମ୍ବା ଲମ୍ବା ନୁଆଣିଆଁ ଚାଳଘର । କମଳାବାଈ କିନ୍ତୁ କୋଠା ଘରେ ରହେ । ତାରି ପାଖରେ ସେଇ ରାତିଟି କଟାଇଲା ଚମ୍ପା ।

ତା ପରଦିନ ସକାଳେ କେତେଜଣ ଝିଅ କମଳାବାଈ ପାଖକୁ ଆସିଲେ । କମଳାବାଈ ଚମ୍ପାକୁ ସମସ୍ତଙ୍କୁ ଚିହ୍ନାଇଦେଲା । ଏ ହେଉଛି

ଚଂପା । ଆମ ପଡ଼ାରେ ସବୁଠାରୁ ସୁନ୍ଦରୀ ଝିଅ । ସେ ଏଠାରେ ଗୃମେଲି ନାଁରେ ପରିଚିତା ହେବ । ତମେ ସବୁ ତାକୁ ଗୃମେଲି ବୋଲି ଡାକିବ । ସମସ୍ତେ ଖୁସି । ଗୃମେଲି ଆସିଛି ସବୁଠାରୁ ସୁନ୍ଦରୀ ଝିଅ ।

ଏ ସବୁ ଦେଖି ଚଂପା କିଛି କିଛି ବୁଝି ପାରୁନଥାଏ । ସନ୍ଧ୍ୟା ପୂର୍ବରୁ ମୁଣ୍ଡ କୁଣ୍ଡାଇ ଭଲ ଶାଢ଼ୀ, ବ୍ଲାଉଜ ପିନ୍ଧିବାକୁ ପରାମର୍ଶ ଦେଲେ । ସକାଳଓଳି ଗଣ୍ଡାଏ ଭଲ ଖାଇବାକୁ ଦେଉନଥିବା କମଳାବାଈ ସନ୍ଧ୍ୟାରେ ଦାମିକା ଶାଢ଼ୀ ବ୍ଲାଉଜ ପିନ୍ଧିବାକୁ କହୁଛି କାହିଁକି ?

ଚଂପା ଦେଖିଲା, ଗୋଟିଏ ପୁଅକୁ ଗୋଟିଏ ଝିଅ । ହାତ ଧରାଧରି ହୋଇ ପଡଆରେ ବୁଲୁଛନ୍ତି । କେଉଁଠି ପୁଅ ଝିଅକୁ ତ କେଉଁଠି ଝିଅ ପୁଅକୁ ଟାଣି ଟାଣି ସେଇ ନୁଆଣିଆଁ ଘର ଭିତରକୁ ଟାଣି ନେଇଯାଉଛି । ଏସବୁ ଦେଖି ତା'ର ମୁଣ୍ଡ ଘୂରିଗଲା । ଜଣେ ୧୬।୧୭ ବର୍ଷର ଝିଅଟିଏ ଆସି କହିଲା ଗୃମେଲି ଦିଦି ତମେ ଆଜି ଯିବନି ?

କୁଆଡ଼େ ? ଚଂପା ପ୍ରଶ୍ନ କଲା ।

କିଛି ଜାଣିନ ! ଆଉ କିଛି ସମୟ ପରେ ସବୁ ଜାଣିଯିବ ଯେ । ହଁ ଦିଦି ତମେ ଜାଣିଛ ଆଜ ରୁମର ଅତିଥି ଏ ସହରର ସବୁଠାରୁ ବଡ଼ ଧନୀ ଶେଖର ବାବୁ । ଶେଖର ବାବୁନା ଭାରି ଭଲ ଲୋକ । ଏ ପଡ଼ାକୁ ଯିଏ ଆସେ ସେ ତାର ପ୍ରଥମ ଗରାଖ ହୁଏ । ତମେ ଜାଣ ଦିଦି ଶେଖର ବାବୁ ଖାଲି ବକ୍‌ସିସ୍‌ ଦଅନ୍ତି ଶହେ ଟଙ୍କା ।

ଚଂପା ବୁଝିଲା । ଏ କମଳା ବାଈର ଘର ନୁହେଁ ନର୍କ ପୁର । ଏଠାରେ ଯେତେ ନାରୀ ସମସ୍ତେ ପ୍ରତାରିତା, କମ୍ପା ପରିତ୍ୟକ୍ତା । ସମସ୍ତେ ପୂଜ୍ୟା ନୁହେଁ, ଭୋଗ୍ୟା, ନାରୀ ଜାତିର କଳଙ୍କ । କିନ୍ତୁ ସେ ଏଠାରୁ ମୁକ୍ତି ପାଇବ କିପରି ? କ'ଣ ତାର ବାଟ ? ଚଂପା ସେ ଝିଅଟିର ଗୋଡ଼ ଧରି-

ପକାଇ ସେ କହନ୍ତି ଏଠାରୁ ମୁକ୍ତି ପାଇବ ତା'ର ବାଟ ପଗୃଁହିଲ । ଝିଅଟି କହିଲା ବଦ୍ଧ ଏଠାକୁ ଯିଏ ଆସେ ସେ ଆଉ ଫେରିପାରେନା । କମଳାବାଈର ଯନ୍ତାରେ ଥରେ ଯେଉଁ ଚଢ଼େଇ ଧରାପଡ଼ଏ ସେ ଚଢ଼େଇକୁ ନରମାଂସ ଲୋଭୀ ଯୌନ କ୍ଷୁଧାର୍ତ୍ତ ମଣିଷମାନଙ୍କ ଆଗକୁ ସେ ଫୋପାଡ଼ି ଦଏ ନିର୍ବିବାଦରେ କେତୋଟି ଟଙ୍କା ବିନିମୟରେ । ଏହାର ଯିଏ ପ୍ରତିବାଦ କରେ ତାର ଭଡ଼ା-ଟିଆ ଗୁଣ୍ଡା ଆସି ସେ ଝିଅକୁ ଜବତ୍ କରେ ଠିକ୍ ତାର ପୋଷା ମାନିବା ପର୍ଯ୍ୟନ୍ତ ।

କମଳାବାଈ ସେଠାରେ ପହଞ୍ଚି କହିଲା, ଚଂପା ଏଇଟା ମୋର ବେପାର, ମୋତେ ପଇସା ଦରକାର । ତୁ ସୁଖରେ ଗଣ୍ଡାଏ ଖାଇବୁ, ଭଲକରି ପିନ୍ଧି-ବାର ମୁଁ କେଉଁଦିନ ହେଳା କରିବି ନାହିଁ । ଆଜି ଶେଖର ବାବୁ ଆସିବେ ତାଙ୍କୁ ଖୁସିକରାଇବୁ । ଚଂପା କିଛି କହିବା ପୂର୍ବରୁ କମଳାବାଈ ଚାଲିଗଲା ।

ରାତି ସାତଟା କି ଆଠଟା ଗୋଟିଏ ଘରେ କବାଟ ଦେଇ ଶୋଇ ଥାଏ । ଚମ୍ପା କଣ କରିବ କିଏ ତାକୁ ସାହାଯ୍ୟ ଦେବ, ତା ସ୍ୱାମୀ କୁଆଡ଼େ ଗଲା । ଶାଶୂ, ସୀତାରାମଙ୍କର କଥାକୁ ଚିନ୍ତା କରୁଥିଲା । ଏହି ସମୟରେ କବାଟ ଠକ୍ ଠକ୍ ହେଲା । ଜୀବନ ସଂଗ୍ରାମରେ ଶେଷଥର ବାଜି ଲଗାଇ ଦମ୍ଭରେ କବାଟ ଖୋଲିଲା ।

ଶେଖର । ଭିତରକୁ ମିବକ ।

ମୁଁ ବେଶ୍ୟା ନୁହେଁ ଆପଣ ଆଉ କାହାକୁ ଦେଖିପାର—ଚମ୍ପା ଉତ୍ତର ଦେଲା, କମଳାବାଈ ସେ ମୋ ଠାରୁ ପଇସା ନେଇଛି ? ଆପଣ କମଳାବାଈ ପାଖକୁ ଯାଇପାରନ୍ତି । ଶେଖର ଆଉ ପ୍ରତିବାଦ ନକରି କମଳା ବାଈକୁ ଖବର ଦେଇ ଚାଲିଗଲା । ଶେଖରକୁ ଫେରାଇଦେବା ପରେ ଚମ୍ପାର ଅବସ୍ଥା କଣ ହେବ ସେ କଥା ଚିନ୍ତା କରିଥିଲା ଚମ୍ପା । ରାତି କେତେଟା ହେଲାଣି ଚମ୍ପାକୁ ଜଣା ନାହିଁ । କମଳା ବାଈର ମୁଣ୍ଡରେ ପିତ୍ତ ଚଢ଼ିଛି । ଆଜି ଗୁଣ୍ଡା ସାହାଯ୍ୟରେ ଚମ୍ପାର ମନ ନ ମନେଇଲେ ରୋଜଗାରଟା ମାରା ପଡ଼ିଯିବ । କମଳାବାଈ ଏବେଠାରୁ ନାମଜାଦା ଗୁଣ୍ଡାର ହାତ ଅଛି । ଚମେଲିକୁ ମନେଇବାକୁ ହୁକୁମ ଦେଲା କମଳାବାଈ, ଆଉ ମନେଇ ଦେଲେ

କୋଡ଼ିଏ ଟଙ୍କା ଅଧିକା ବକ୍‌ସିସ୍‌ ଦେବ ବୋଲି ମଧ୍ୟ ସଫା ସଫା କହିଦେଲି ।

ହାତରେ ଠେଙ୍ଗା କଳା ମୁଚ୍‌ ମୁଚ୍‌ ଦେହ । ଠେଙ୍ଗାଟାକୁ ତଳେ ପିଟି ପିଟି ଆସୁଥାଏ କିଏ ଜଣେ । ଚମ୍ପା ଭବିଷ୍ୟତର ବଚଦ କୁ ଅପେକ୍ଷା କରିଥାଏ । ପ୍ରତାରିତ ଚମ୍ପା ଏଇଥି ପାଇଁ ପ୍ରସ୍ତୁତ ।

କବାଟ ଠକ୍‌ ଠକ୍‌ ହେଲା । ଚମ୍ପା ଈଶ୍ୱରଙ୍କୁ ଡ଼ାକି ଛାତିକୁ ପଥର କରି କବାଟ ଖୋଲିଲା । ଡିବି ଆଲୁ ଜଳୁଛି । ଯୁବକଟି କହିଲା ତୋ ନାଁ ଗୃମେଲି ?

ନାଁ—ଉତ୍ତର ଦେଲା ଚମ୍ପା ।

ମୋତେ କମଳାବାଇ ପଠାଇଛି ଘୃମେଲି ପାଖକୁ । ଗୃମେଲି କେଉଁ ଘରେ ଅଛି ?

ଚମ୍ପା କହିଲା—ମୋ ନାଁ ଚଂପା । ମୋତେ କାଲିଠାରୁ ଏମାନେ ଘୃମେଲି ବୋଲି ଡ଼ାକୁଛନ୍ତି । ଚଂପା ? ହଠାତ୍‌ ଏ ନାଁ ଶୁଣି ଯୁବକଟି ଚମକି ପଡ଼ିଲା । ସେ ଉପରକୁ ଧାଇଁଯାଇ ଡ଼ିବିର ଆଲୁଅରେ ଚଂପା ମୁହଁଟିକୁ ଥରେ ଭଲକରି ଅନାଇଲା । ଏ ମୋ ଚଂପା ନୁହେଁ ତ ?

ତମେ କିଏ ? ପ୍ରଶ୍ନ କଲା ଚଂପା । ମୁଁ ଚଇତା । ମହାଜନଠାରୁ ମୁଁ ଚଂପାକୁ ବାହାହେବା ପାଇଁ ଧନ କରଜ ଆଣି ଶୁଝି ନପାରି ମୋ ସ୍ତ୍ରୀକୁ ଗାଳି ସହି ନପାରି, ଗୁମାସ୍ତାକୁ ମାରି ଫେରାର ଆସାମୀ, ଚଇତା ।

ତମେ ଏତେଦିନ ହେଲା କେଉଁଠି ଥିଲ । ମୁଁ ହେଲି ତମରି ଚଂପା ତମରି ଚଂପାକୁ ଦଳି ନକଟି ନଷ୍ଟଭ୍ରଷ୍ଟ କରିଦେବାକୁ ଆଜି ସେମାନେ ଗୁଣ୍ଡା ପଠାଇଛନ୍ତି

ଚଂପା ଚଇତାର ମିଳନ ହେଲା । ଚଂପା ଚଇତାକୁ ମୂଳରୁ ଶେଷଯାଏ ସବୁ କଥା କହିଲା ପରେ ଓ ଚଇତା ଚଂପାକୁ ସେଠାରୁ ମୁକୁଳେଇବା ସମ୍ଭବ ହୋଇନଥିଲା । ଚଇତାର ଉତ୍ତର ଦେଖି କମଳା ବାଇ କବାଟ ପାଖରେ ଏସବୁ ଶୁଣୁଥିଲା । କମଳାବାଇ ଚଂପା ଚଇତା, ସ୍ୱାମୀ-ସ୍ତ୍ରୀ ବୋଲି ଶୁଣି ପରି ଅନ୍ୟ ଗୁଣ୍ଡାମାନଙ୍କୁ ଏ ଦୁହିଁଙ୍କ ତୁରନ୍ତ ଜୀବନରେ ମାରିଦେବାକୁ ଆଦେଶ ଦେଲା ।

ଚଇତା ଭଲଭାବେ ଜାଣିଥିଲା ଏ ନର୍କର ବଳୟ ଭିତରୁ ମୁକ୍ତ ପାଇବାପାଇଁ ତାର ଉପାୟ ନାହିଁ । ଯେଉଁଠି ଶାଗ, ପରିବାପରି ଯୌବନ ବୟସର ନିକିତିରେ ତଉଲ କରାଯାଏ, ସେଠାରୁ ଚଂପା ମୁକ୍ତ ପାଇବ କେମିତି ।

ଉପାୟ ଥିଲା । ଶାଢ଼ୀ କାନିରୁ ଦୁଇ ପାର୍ଶ୍ୱରେ ନିଜର ବେକକୁ ବାନ୍ଧି ସେଇ ଘରର ରୁଅ ଉପରେ ଉଭୟ ଓହଳି ପଡ଼ିଲେ କେଇମିନଟ୍ ଚିତ୍କାର କରି ।

ନର୍କର ବଳୟ ମଧ୍ୟରୁ ପାରିହେବାପାଇଁ ଜୀବନ ଯୋଡ଼ିକ ଉଡ଼ି ଯାଇଥିଲା ଦୂରକୁ ବହୁଦୂରକୁ ।



# ପ୍ରୀତିର ଫସଲ

ଜୀବନ—ଆନ୍ଦ୍ରେ ମୋରଓ୍ୱେଙ୍କ ମତରେ ପୁରୁଷ ସ୍ତ୍ରୀକୁ ଯାହାକହେ ସେଥିପାଇଁ ତାକୁ ପ୍ରେମ କରେ ନାହିଁ । କିନ୍ତୁ ସ୍ତ୍ରୀ ତାକୁ ପ୍ରେମ କରେ ଫଳରେ ପୁରୁଷ ସ୍ତ୍ରୀକୁ ଭଲପାଏ ।

ଜ୍ୟୋତି—ଥିଓଡ଼ର ବାନଭିଲ୍‌ଙ୍କ ମତରେ ସ୍ତ୍ରୀ ମାନବ ଜାତିର ପ୍ରଥମ ଶିଳ୍ପୀ ଓ ଇମାମ୍ ତୋରାଙ୍କ ମତରେ ସ୍ତ୍ରୀ ମହିମାମୟୀ, ଆଦ୍ୟାଶକ୍ତି ମା, ପତ୍ନୀ, କନ୍ୟା, ଭଗ୍ନୀ, ସେବିକା ଓ ରକ୍ଷାକାରିଣୀ ଓ ପୁରୁଷର ପଥ-ପ୍ରଦର୍ଶକ । ସେଥିପାଇଁ ନାରୀ ପାଖରେ ପୁରୁଷ ମଥାନତ କରେ ।

ଜୀବନ— ସାମୁଏଲ୍ ବଟଲ୍‌ରଙ୍କ ମତରେ ଦସ୍ୟୁ କେବଳ ଆପଣଙ୍କ ଧନ କିମ୍ବା ଜୀବନ ଲୁଟେ, କିନ୍ତୁ ସ୍ତ୍ରୀ ଦୁଇଟିଯାକ ଲୁଟେ । ଏଣୁ ନାରୀଙ୍କୁ ସର୍ବଦା ଦୂରେଇ ରହିବା ଉଚିତ୍ । ଭାରତର ଗୁପ୍ତଚର ଓ ଅନ୍ୟାନ୍ୟ ଗୁପ୍ତ ବିଭାଗରେ ସେଥିପାଇଁ ନାରୀଙ୍କୁ ନିଯୁକ୍ତିଦେବା ନିଷେଧ ହୋଇଛି । ପୁରୁଷ ଜୀବନରେ ନାରୀ ଏକ ଆବଶ୍ୟକୀୟ ସଇତାନ୍ । ମନ୍ଦ ସ୍ତ୍ରୀ ଠାରୁ ସ୍ତ୍ରୀ ନଥିବା ବରଂ ଭଲ ।

ଜ୍ୟୋତି—ଶରତ ଚନ୍ଦ୍ରଙ୍କ ଭାଷାରେ ମଣିମାଣିକ ମହାମୂଲ୍ୟ ବସ୍ତୁ । କାରଣ ତାହା ଦୁଷ୍ପ୍ରାପ୍ୟ । ଏଇ ଦୃଷ୍ଟିରୁ ନାରୀର ମୂଲ୍ୟ ବେଶି ନୁହେଁ । କାରଣ ନାରୀ ଦୁଷ୍ପ୍ରାପ୍ୟ ନୁହେଁ । ପାଣି ପଦାର୍ଥଟି ସର୍ବଦା ପ୍ରୟୋଜନ । କିନ୍ତୁ ଏହା ଦୁଷ୍ପ୍ରାପ୍ୟ ନୁହେଁ ଏଣୁ ଏହାର ଦାମ ନାହିଁ । କିନ୍ତୁ କେବେ ଯଦି ଏହାର ଅଭାବ ହୁଏ ତାହା ହେଲେ ଜଣେ ସମ୍ରାଟ ଆବଶ୍ୟକ ହେଲେ ଟୋପାଏ ପାଣିପାଇଁ ତାର ମୁକୁଟର ଶ୍ରେଷ୍ଠ ରତ୍ନଟି ସୁଦ୍ଧା ଛାଡ଼ିବାକୁ କୁଣ୍ଠାବୋଧ କରିବ ନାହିଁ । ସେମିତି ଈଶ୍ୱର ନ କରନ୍ତୁ ଯଦି କୌଣସି ଦିନ ସଂସାରରେ ନାରୀ ବିରଳ ହୋଇଯାଏ, ସେଇଦିନ ହିଁ ନାରୀର ଯଥାର୍ଥ ମୂଲ୍ୟ କେତେ ସେଇ ତର୍କର ନିଷ୍ପତ୍ତି ହୋଇଯିବ । ଆଜି ନୁହେଁ । କାରଣ ଆଜି ନାରୀ ସୁଲଭ ।

ତଥାପି ତୁମେ ତୁମ ସ୍ତ୍ରୀଙ୍କୁ ଗଧ କରିଦେଲେ ସେ ବି ତୁମକୁ ବଳଦ କରିଦେବ । ପରୀକ୍ଷା ପ୍ରାର୍ଥନୀୟ ।

ପୁରୁଣା କଲେଜ ମାଗାଜିନ୍‌ରେ ତର୍କ ସଭାର କେତୋଟି ପଂକ୍ତି ପଢ଼ୁଥିଲି ଜ୍ୟୋତି ।

ପ୍ରାଣନାଥ ମହାବିଦ୍ୟାଳୟର ଇତିହାସ ବିଭାଗ ଅଧ୍ୟାପକ ପ୍ରାଣ-କାନ୍ତ ଜୟସିଂ ପାଇକରାୟଙ୍କ ସହଧର୍ମିଣୀ ଜ୍ୟୋତି ।

ଏପ୍ରିଲର ମଧ୍ୟାହ୍ନରେ ଅଳସ ଦେହକୁ ଓ୍ୱନ୍‌ଲପ୍‌ ଗଦିରେ କିଛି-ସମୟ ପାଇଁ ପକାଇ ଦେଇଥିଲି ।

୨ ବର୍ଷର କୁନି ପୁଅ ସଂଗ୍ରାମ ବାହାରେ ଖେଳୁଛି । ସ୍ୱାମୀ ଏ ପର୍ଯ୍ୟନ୍ତ ମଧ୍ୟାହ୍ନ ଭୋଜନ ପାଇଁ ଆସିନାହାନ୍ତି ।

ଆରେ ସଂଗ୍ରାମ କାହିଁ ?

ସେ ତ ଏଇଟି ଖେଳୁଥିଲା । ଦାଣ୍ଡ, ବାଡ଼ପଟ ସବୁଆଡେ ଖୋଜି ପକାଇଲା ଜ୍ୟୋତି । ସଂଗ୍ରାମ, ସଂଗ୍ରାମ ଡାକିଲେ ଜ୍ୟୋତି । ଗୋଟେଇ ଘରୁ ସଂଗ୍ରାମର ପାଟି ଶୁଭିଲା । ଜ୍ୟୋତି ଯାଇ ଦେଖନ୍ତି ଭିତରୁ ପଟ ବନ୍ଦ ହୋଇଯାଇଛି ।

ହାତର ଝୁଲୁଛି । ହାତର ଉପରେ କ୍ଷୀର ଡେକ୍‌ଚିଟି ସେମିତି ଅଛି । ସଂଗ୍ରାମ ସେ ଡେକ୍‌ଚିକୁ ଧରିବାକୁ ଯାଉଛି । ବ୍ୟତିବ୍ୟସ୍ତ ହେଲା ଜ୍ୟୋତି ।

ହେ, ହେ, ସଂଗ୍ରାମ ହେଥିରେ ଲଗ୍‌ନା, କରେଣ୍ଟ ଲାଗିଯିବ । ଲଗ୍‌ନା ।

ପିଲାଟି ଆହୁରି ଖୁସିହୋଇ ହସୁଛି ।

ମୋ ବାପାଟା ପରି; ସୁନାଟା ପରି, ସେ କବାଟକୁ ଖୋଲି ଦେ ।

ତାଙ୍କୁ ଭଲ ଲାଗିଲା, ସେ ପୁଣି ହସିଲା ।

କିଛି କ୍ଷଣପରେ ସେ କବାଟ ଖୋଲିବାକୁ ଚେଷ୍ଟା କଲା, କିନ୍ତୁ ପାରିଲାନି । ପିଲାଟିର ଅଲକ୍ଷରେ ଡ଼ିଙ୍କିଆ ପଡିଯାଇଥିଲା ।

ମେନ୍ ସୁଇଜ୍ ଅଫ୍ କଲା ଜ୍ୟୋତି ।

ଦେଖ୍ ମୋ ବାପାଟା ପରି ସେଇ ହୁକ୍‌କୁ ଠେକିଦେ । ହାତରେ ଧରି ଏଇମିତି ଠେକିଦେ । ଦେ ଠେକିଦେ ।

କବାଟ ଖୋଲିବା ସହଜ ନଥିଲା । ଓଲଟା ସଗ୍ରାମ ଅଭିଯୋଗ କଲା—ଖୋଲ୍ ମା' ଖୋଲ, ମୁଁ ଯିବି ।

କାନ୍ଦିବା ଆରମ୍ଭ କଲା ସଂଗ୍ରାମ ।

କିଂ କର୍ତ୍ତବ୍ୟ ବିମୂଢ଼ ହେଲା ଜ୍ୟୋତି ।

ଏଣେ ପିଲାଟି ରଡ଼ି ଗୁଡ଼ାଇଲାଣି । ପଡ଼ିଶା ଘରେ କେହି ନାହାନ୍ତି କି'ଣ ବାହାଘର ପାଇଁ ଗାଁକୁ ଯାଇଛନ୍ତି ।

ନାଁ-ରାସ୍ତାରେ ହୁଏ ଯାଉଥିବ ତାଙ୍କୁ ଡାକିବେ ?

ଟାଇକ ରାପ୍ତ ବଂଶର ମାନ୍ତିନପୁମ ଅତି ଜଘନ୍ୟ । ପୁଣି କାହାକୁବା ଡାକିବେ । ସ୍ୱାମୀ କେତେବେଳେ ଆସିବେ ।

ସାଇକେଲରେ ଜଣେ କେହି ସେଇ ରାସ୍ତାରେ ଯାଉଥିଲେ ।

ଡାକିବେ କି ନାହିଁ ଠିକ୍ କରିପାରିଲେନି ଜ୍ୟୋତି । ସଂଗ୍ରାମର ବିକଟାଳ ଚିତ୍କାର ତାଙ୍କୁ ଅସହ୍ୟ ବୋଧ ହେଲା ।

ନାଁ । ରାସ୍ତାରେ ଯେ କେହି ଯାଉଥିବ ତାଙ୍କୁ ଡାକିବ ପିଲଟି ଯେପରି ଉଦ୍ଧାର ପାଇବ ।

ସେହି ସମୟରେ ରାସ୍ତାରେ ଯାଉଥିବା ଜଣେ ଭଦ୍ରଲୋକଙ୍କୁ ଜ୍ୟୋତି ଡାକିଲେ । ଲୋକଟି ମୁହଁରେ ଦାଢ଼ୀ, କାନ୍ଧରେ ଝୁଲାଟିଏ ପକାଇଥିଲା । ଟ୍ରାଉଜର ପଞ୍ଜାବୀଟିଏ ପିନ୍ଧିଛନ୍ତି ।

ଭଦ୍ରଲୋକ ଜଣକ ସାମାନ୍ୟ ଶଙ୍କିଯାଇ ଦଣ୍ଡେ ଛିଡ଼ାହେଲେ ।

ଆପଣଙ୍କୁ ଡାକୁଛି ଆଜ୍ଞା । ଆପଣଙ୍କୁ ଡାକୁଛି ।

ଭଦ୍ରଲୋକ ଜଣଙ୍କ ଆସିଲେ । ଜ୍ୟୋତିର ପରାମର୍ଶ କ୍ରମେ ତମିନା ସ୍ଥୁତ ଉପରକୁ ଚଢ଼ି ଭିତରପଟୁ ବୋଲ୍ଟ ଖୋଲି ଘର କବାଟ ଖୋଲିଲେ ।

ସଂଗ୍ରାମ କାନ୍ଦ ବନ୍ଦ କଲା ।

ପିଲାଟା ଏତେ ଦୁଷ୍ଟ ହେଉଛି ଯେ···

ହଁ ପିଲାଲୋକ ।

ଅନେକ ସାହାଯ୍ୟ କରିନଥିଲେ ପିଲାଟା···

ଥାଉ ।

ମୁହଁକୁ ଚାହିଁଲା ଜ୍ୟୋତି । କିଏ ! କିଏ !! କିଏ ସେ । ଯାହାର କଥାପଦକ ସତେ ଅବା ନିକଟ ଭବିଷ୍ୟତରେ ବହୁବାର ଶୁଣିଛି ।

ଏଁ ସେହି ଜୀବନ ଭାଇ ନୁହେଁ ତ ? ଅଜାଣତରେ କହିପକାଇଲା ଜ୍ୟୋତି ।

ହଁ ଜ୍ୟୋତି ମୁଁ ସେଇ ଜୀବନ ।

ଜୀବନ ଭାଇ !

ଜ୍ୟୋତି ଦେବୀ, ତମେ ବଡଲୋକ । ପ୍ରତିଷ୍ଠିତ ଅଧ୍ୟାପକଙ୍କ ସହଧର୍ମିଣୀ । ପୁଣି···

ଥାଉ, ଆଚ୍ଛା ଜୀବନ ଭାଇ ମୁଁ ତ ତୁମକୁ ପ୍ରଥମେ ଚିହ୍ନି ପାରିଲିନି । ତମେ କେମିତି ଅଛ ? ଭାଉଜ କେମିତି ଅଛନ୍ତି ? କେଉଁଠି ରହୁଛ, ଏମିତି କଣ ଶୁଖିଗଲଣି ? ଏକା ନିଶ୍ୱାସରେ କହିଗଲା ଜ୍ୟୋତି । ସତେ ଯେମିତି ନିଜର ଅତି ଆପଣାର ଲୋକକୁ ବହୁଦିନ ପରେ ଆଜି ପାଇଛି ।

ଏମିତି ଛିଡ଼ାହୋଇ ରହିଲ କ'ଣ ମ ଆସ ଭିତରକୁ ଆସ ।

ନାଁ । ଥାଉ ।

ଭାଉଜ କେମିତି ଅଛନ୍ତି ?

ଉଁ, ହୁଁ, ଭଲରେ ଅଛନ୍ତି ।

ଅନ୍ୟମନସ୍କ ଭାବେ ଉତ୍ତର ଦେଲା ଜୀବନ ।

ହଉ ମୁଁ କେବେ ଯାଇ ଭାଉଜଙ୍କୁ ଦେଖିଆସିବି ।

ମୁଁ ବିଦାୟ କରନ୍ତୁ ଜ୍ୟୋତି ।

ଜୀବନ ଭାଇ ?

ଥଣ୍ଡା ପାଣି ଗୋଟାଏ ଗ୍ଲାସ ଦେଇ ପାରିବ ?

ଶୋଷ ଲାଗୁଛି ।

ସଙ୍ଗେ ସଙ୍ଗେ ଜ୍ୟୋତି ପାଣି ଗ୍ଲାସ୍ ଆଣି ଅବନତ ଲଜ୍ଜିତ ମୁହଁରେ କହିଲେ—କ୍ଷମା କରିବେ ଜୀବନ ଭାଇ ତମର ଉଚିତ୍ ସତ୍କାର କରିପାରିଲିନି ।

ପାଇକରାୟ ବଂଶରେ କୂଳବଧୂ ସାଜିବା ପରଠାରୁ ପର ପୁରୁଷକୁ ନିଜ ହାତରେ ପାଣିଦେବା ଏଇା ପ୍ରଥମ । ବଂଶର ଅତୀତ ଗୌରବ ମ୍ଳାନ ହୋଇଯାଇଥିଲେ ବି ବଂଶର ଆତ୍ମାଭିମାନର ଅବସାନ ହୋଇନଥିଲା ।

ଟାଣି ଗ୍ଲାସଟି ଧରିବା ବେଳକୁ ଜୀବନ ହାତରେ ଥିବା ଫୁଲାଏ ଲିଫ୍‌ଲେଟ୍ ଖସିପଡ଼ିଲା । ଜୀବନରେ ଯେସବୁ ଏତେତେତେ ବାଗୁଡ଼ି ଦେଖିଲା । ଜ୍ୟୋତି ସେବୁଡ଼ିକ ଗୋଟେଇଲେ ।

ତମେ କଣ ରାଜନୀତି କରୁଛ ଜୀବନ ଭାଇ ।

ହଁ ଏଇମିତି ଗୋଟାଏ ।

ଗେଟ୍ ଖୋଲୁ ଖୋଲୁ କର୍କଶ କଣ୍ଠରେ ଡାକଦେଲେ ପ୍ରାଣକାନ୍ତ ବାବୁ । ଜ୍ୟୋତି··· ।

ଦୁଆର ପାହାଚ ଚଢ଼ୁ ଚଢ଼ୁ ଜୀବନ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶକରି ପ୍ରଶ୍ନ କଲେ— କିଏବେ ଏ । ଗେଟ୍ ପାଖରେ ଛିଡ଼ା ନହୋଇ ସିଧା ସିଧା ଘର ଭିତରକୁ ପଶି ଆସିଲୁଣି ।

ଅଳିଆ କେଶ, ଅଳନ୍ଧୁ ଲଗା ବିକୃତ ମୁହଁ ସାଙ୍ଗକୁ ଦାଢ଼ି ଦେଖି ବୋଧହୁଏ ଚିହ୍ନି ପାରୁନଥିଲେ ପ୍ରାଣକାନ୍ତ ବାବୁ ।

କଥା ଛଡ଼େଇ ନେଇ ଜ୍ୟୋତି ଉତ୍ତର ଦେଲେ—ମୁଁ ପରେ କହିବି । ଆଜି ସଂଗ୍ରାମ ଯେଉଁ କାଣ୍ଡ କଲା··· ।

ସେତେବେଳକୁ ଗ୍ଲାସର ସମସ୍ତ ଜଳ ଗର୍ଭସ୍ଥ କରିସାରିଥିଲା ଜୀବନ ।

ଖାଲି କାଚ ଗ୍ଲାସଟା ଜ୍ୟୋତି ଆଡ଼କୁ ବଢ଼ାଇ ଦେଉଦେଉ ହଠାତ୍ ବୁଟ୍‌ର ଗୋଇଠାରେ କାଚ ଗ୍ଲାସଟା ଛିଟିକି ପଡ଼ିଲା ।

ଆବେ ଉଦ୍ଦାମି ଜାଣିନୁ ? ଅଇଁଠା ଗ୍ଲାସଟା ଜଣେ ଭଦ୍ରମହିଳାଙ୍କୁ ଦେଉଛୁ ।

କାଚ ଗ୍ଲାସଟା କାନ୍ଥରେ ବାଜି ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଦୁଇଗୁରଟା କାନଖଣ୍ଡ ଜୀବନର ଆଣ୍ଠୁରେ ବାଜି ରକ୍ତ ବାହାରୁଥିଲା ।

ଜୀବନ ଅଣ୍ଟୁରୁ କାଚ ଖଣ୍ଡ ବାହାର କରିବାକୁ ଉଦ୍ୟତ ହେଉ-
ଥିଲା ଜ୍ୟୋତି ।

ପ୍ରାଣକାନ୍ତ ବାବୁ ପ୍ରତିରୋଧ କଲେ ।

ମୁଁ ଯାଉଛି ଜ୍ୟୋତି ଦେବୀ ।

ଆବେ ଯା ! ତତେ କଏ··· ।

ମୁଁ ଗୁଏଁ ଗୁଏଁ ଆସିନଥିଲି ଅଧ୍ୟାପକ ମହାଶୟ, ଆପଣଙ୍କ ସ୍ତ୍ରୀଙ୍କ ନିମନ୍ତ୍ରଣ ଫଳେ ··· । କଥା ନସରୁଣୁ ପୁଣି ଦୁଇଟା ଥାପଡ଼ ବଜାଇଲେ ପ୍ରାଣକାନ୍ତ ବାବୁ ।

ଏଥର ପ୍ରତିବାଦ କଲା ଜ୍ୟୋତି ।

ଏ ତୁମେ କ'ଣ କଲ । ମୋ ଅନୁରୋଧରେ ମୋତେ ସାହାଯ୍ୟ କରିବାକୁ ଆସି ତାଙ୍କୁ— ।

ମୁଁ ଜାଣେ ଜ୍ୟୋତି । ଏ ଲୋକଟା ଯେହି ଯେ ତୁମକୁ— ।

ଆବେ ଅନେଇଛୁ କ'ଣ ଯା—

ମୁଁ ଯାଉଛି ଜ୍ୟୋତିଦେବୀ । ଉପକାରର ଯଥେଷ୍ଟ ପୁରସ୍କାର ମିଳିଲା ।

ଭଗ୍ନ ହୃଦପୃଷ୍ଠିକୁ ଆଗକୁ ଠେକେଇଲେ ଜୀବନ ।

ଜ୍ୟୋତି କଣ କହିବାକୁ ଯାଉଥିଲେ ପୁଣି ଅଟକିଗଲେ ।

× × ×

ରାତି ଅନେକ ହେଲାଣି । ଜ୍ୟୋତିଦେବୀଙ୍କ ଆଖିରେ ନିଦ୍ରା ନାହିଁ । ଅତୀତର ସ୍ମୃତି, ବର୍ତ୍ତମାନର ପରିସ୍ଥିତି ତାଙ୍କ ମନ,ବିବେକ ମଧ୍ୟରେ ସଂଗ୍ରାମ

ଚଳାଇଛନ୍ତି । ବାସ୍ତବ ଜୀବନରେ ଆଜିର ମଧ୍ୟାହ୍ନରେ ସଂଗ୍ରାମ ପାଇଁ ଯେଉଁ ମହାଭାରତର ସୂତ୍ରପାତ ତାଙ୍କର ଅତୀତ ସ୍ମୃତିକୁ ପୁଣି ଉଜ୍ଜୀବିତ କରୁଥିଲା ।

ଜୀବନ ଭାଇ ।

ବାରିପଦା ଆଇନ କଲେଜ ଛାତ୍ର ସଂସଦର ସମ୍ପାଦକ ଆଜି ସେ କଲେଜର ସର୍ବଶ୍ରେଷ୍ଠ ସୁନ୍ଦରୀ, କୃତି ଛାତ୍ରୀ ।

ତା'ର ଠିକ୍ ମନେ ଅଛି ସେଦିନ ନାରୀର ମୂଲ୍ୟ ସମ୍ପର୍କରେ ତର୍କ ପ୍ରତିଯୋଗିତାରେ ଜୀବନ ସହିତ ଘମାଘୋଟ ବାକ୍ଯୁଦ୍ଧ, ଶ୍ରୋତାମାନଙ୍କ ଘନ ଘନ କରତାଳି ଓ ପରେ ଜୀବନ ସହ ଘନିଷ୍ଠ ସମ୍ପର୍କରେ କେତୋଟି ସ୍ମୃତି । ଆଜି ସେଦିନ କଲେଜ ବରାଣ୍ଡାରେ କେତେକ ଉନ୍ମତ୍ତ ଯୁବକଙ୍କ ଅଶ୍ଳୀଳ ଇଙ୍ଗିତରେ ବ୍ୟତିବ୍ୟସ୍ତ ହୋଇ ସେ କହିଲା—

ତମର କ'ଣ ମା' ଭଉଣୀ ନାହାନ୍ତି ।

ହଁ ସେମାନେ ତ ତୁମର ଶାଶୂ ନହେ ।

ବଜାରୀ ।

ବଜାରରେ ବୁଲୁଛୁ ଯେତେବେଳେ ।

ଜ୍ୟୋତି ରାଗ ତମ୍ ତମ୍ ହୋଇ ଯାଇ ଜୀବନକୁ ଏକଥା କହିଲା । ଜୀବନର ସେମାନଙ୍କୁ ତା'ର ସାଥିମାନଙ୍କ ସହିତ ସେମାନଙ୍କ ପାଇଁ ବେଶ୍ ଦ'ଟା ଉତ୍ତମ ମଧ୍ୟମର ବ୍ୟବସ୍ଥା କରିଥିଲି ।

କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ଜୀବନକୁ ଜୀବନ ସାଥୀ କରିବାର ଆଗ୍ରହ ଶପଥ ନେଲା । ପଥରର ମୂର୍ତ୍ତୀକୁ ସାକ୍ଷୀ ରଖି ଜୀବନ ତା ମୁଣ୍ଡରେ ସିନ୍ଦୂର ଲଗାଇ ଜୀବନ ସାଥୀ କଲା । କିନ୍ତୁ ଏ ସମାଜ, ଏ ସବୁକୁ ଅସ୍ୱୀକାର କଲା । ପଥର ମୂର୍ତ୍ତୀ କ'ଣ ସାକ୍ଷୀ ଗୋପୀନାଥ ହୋଇ ଏହାର ସାକ୍ଷଦେବ ?

ଏ ପରିବାର ଘୃଣା କଲା । ଆଭିଜାତ୍ୟ, ବଂଶ ପରମ୍ପରାର ଦୋହାଇ ଦେଇ ହିନ୍ଦୁ ସମାଜରେ ବିବାହିତା କୁମାରୀ ମଥାରେ ଯୁବକର ସିନ୍ଦୂରକୁ ବିବାହ ବୋଲି ଗ୍ରହଣ କଲେନି । ଧନ ଗୌରବର ଦୋହାଇ ଦେଇ ଏ ସମସ୍ତଙ୍କୁ ଅସ୍ୱୀକାର କଲା !

: :

ଜ୍ୟୋତି ନାରୀ, ଭାରତରେ ସିନା କଲେଜର ଗୁରୁକାନ୍ତଙ୍କୁ ଫାଷ୍ଟ ପ୍ରାଇଜ ପାଇବା ଆଶାରେ କମ୍ପାଇ ଦେଉଥିଲା, କିନ୍ତୁ ତା' ଜୀବନର ବାସ୍ତବ କ୍ଷେତ୍ରରେ ପ୍ରତିବାଦ କରିବାର କ୍ଷମତା ତାର ନଥିଲା ।

ଯଥା ରାବଣସ୍ୟ ମନ୍ଦୋଦରୀ କନ୍ୟା, ଏ ସମାଜ ପ୍ରାଣକାନ୍ତ ବାବୁଙ୍କ ହାତ ଧରିବାକୁ ତାକୁ ବାଧ୍ୟକଲା ।

ଜ୍ୟୋତି ଭାବୁଥିଲା ସତେଯେମିତି ତାକୁ ଜୀବନ ଭାଇ କହୁଥିଲେ—

ଜ୍ୟୋତି, ତମେ ସେଦିନ ମୋ ଆଶାର ବୈତରଣୀ ଅତିକ୍ରମକରି କରିଗଲ । ସେଦିନ ଆମ ଘର ଆଗରେ ଯେତେବେଳେ ବାଜା ବଜାଇ, ଘୋଷଣି କରି ତମର ସେହି ରାଜକୁମାର ଗଲେ ନେଇଆସିବାକୁ ମାଳ ପୁଅର ମନଦେଖାକୁ-ରାଜକୁମାରୀକୁ । ଭାବିକି ପାରିଥିଲି ବିଚରା ମାଳ ପୁଅର ଅବସ୍ଥା କଣ ହୋଇଥିବ ? ତମ ବିଭାଘରର ସାହାନାଇ ମୋ କଣ୍ଠର ତନ୍ତ୍ରୀକୁ ଛିନ୍ନ-ବିଚ୍ଛିନ୍ନ କରିଦେଲା । ଢ଼ୋଲ ବାଇଦ ମୋ ଛାତିର ସ୍ପନ୍ଦନ ରୋକିଦେଲା । ଆଉ ସେହିଁ ନାଲି, ନେଳିର ଆଲୋକ ସଜ୍ଜା ମୋ ଚକ୍ଷୁର ଜ୍ୟୋତିକୁ ହରଣ କଲା । ମୁଁ ପାଲଟିଗଲି ମୂକ, ଅନ୍ଧ । ତମର ମନେ ଅଛି, ସେଦିନ କହିଥିଲିନା ମୁଁ ଲୋଡ଼େନା ଐଶ୍ୱର୍ଯ୍ୟ, ଲୋଡ଼େନା ବିଳାସ ବ୍ୟସନ, ଲୋଡ଼େ ଖାଲି ତୁମକୁ । କିନ୍ତୁ କାହିଁ ? କାହିଁ ସେ ପ୍ରତିଶ୍ରୁତିବଦ୍ଧତା ? କାହିଁ ତମର ସତ୍ୟରକ୍ଷା ? ସେଦିନର ସିନ୍ଦୂର ଟୋପାକ ତମେ କଣ ପିଲାଖେଳ ଭାବିଲ ? ହିନ୍ଦୁ ଧର୍ମିଟା ଭରି ଅଖାଡ଼ୁଆ, ସେ ପଥର ଉପରେ ସିନ୍ଦୂର ଲଗାଇ କହେ, ଏ ଦେବତା କୌଣସି ଏକ ଅନୂଢ଼ା ନାରୀ ମୁଣ୍ଡରେ ସିନ୍ଦୂର ଲଗାଇ କହେ ଏ ମୋ ସ୍ତ୍ରୀ ।

ଅନ୍ୟ ପକ୍ଷରେ—

ପ୍ରାଣକାନ୍ତ ଜୟସିଂ ପାଉଳବନ୍ଧୁ ।

ସ୍ୱାମୀ, ଇହକାଳ ପାଇକାଗର ଦେବତା । ପାଇକବନ୍ଧୁ ବଂଶର ଆଭିଜାତ୍ୟ ଏ ପର୍ଯ୍ୟନ୍ତ ଯାଇନ । ବହୁ କଷ୍ଟରେ ଅଧ୍ୟାପକ ଗୃକର ଖଣ୍ଡିକ ପାଇଥିଲେ ମଧ୍ୟ ଆତ୍ମଗର୍ବର ସୀମାନାହିଁ । ମଦଂପ ଆଉ ଲମ୍ପଟ ।

ମୋର ଠିକ୍ ମନେଅଛି ସେଦିନ ସନ୍ଧ୍ୟାରେ—

ସେହି ଚତୁର୍ଥ ବାର୍ଷିକ ଛାତ୍ରୀଟିଏ ଆସିଥିଲା ଇଂରାଜୀ ବୁଝିବାକୁ । ସେ ପ୍ରାୟ ସବୁଦିନେ ଆସେ । ମୁଁ ପେଶୃବଲରୁ ତମେ କୁହ ସେ ମୋ ପ୍ରିୟ ଛାତ୍ରୀ । ଡ୍ରଇଂ ରୁମ୍‌ରେ ତମେ ତାକୁ ଇଂରାଜୀ ବୁଝାଅ, ମୁଁ ରୋଷେଇକରେ ।

ହଠାତ୍ କଣ ଗୋଟାଏ ଦରକାର ପଡ଼ିବାରୁ ଡ୍ରଇଂ ରୁମ ଭିତରକୁ ପଶି ଯାଉ ଯାଉ, ଇସ୍, ତମେ ତା ମସୃଣ ଗାଲ ଉପରେ ଚୁମ୍ବା ଦେଉଥିଲ, ଆଉ ତା ନାରୀତ୍ୱର ସବୁକିଛି ଅନାୟାସରେ ତୁମକୁ ସେ ଦାନ କରୁଥିଲା । ମୁଁ ଘରେ ଥାଇ ତଥାପି ତୁମର ମୋ ଉପରେ ଅବିଶ୍ୱାସ । କାରଣ ମୁଁ ବିବାହ ପୂର୍ବରୁ ଜୀବନ ବାବୁଙ୍କୁ ଭଲ ପାଉଥିଲି ବୋଲି । ଆଉ ଆଜି ଜୀବନ ଭାଇ ପ୍ରତି କ୍ଷେତ୍ରରେ ମୋତେ ସାହାଯ୍ୟକର ପ୍ରତିଦାନରେ ପାଇଛି କଣ, ଅପଘାତ, ମୋ ସ୍ୱାମୀଙ୍କଠାରୁ ମାଡ଼ ।

କହି କହି ହୋଇ କାନ୍ଦୁଥିଲା ଜ୍ୟୋତି ।

ଚକ ଘୂରୁଛି । ସମୟର ଚକ । ସେହି ଚକ ମଣିଷକୁ ଅମଣିଷ, କରୁଛି । ଜୀବନର ଦଳ ବିଧାନସଭା ନିର୍ବାଚନରେ ବିଜୟୀ ହୋଇଛନ୍ତି । ନିଜେ ଜୀବନ ଜଣେ ବିଧାୟକ ଭାବରେ ବହୁ ଭୋଟରେ ନିକଟତମ ପ୍ରତିଦ୍ୱନ୍ଦୀ-ଠାରୁ ବିଜୟୀ ହୋଇଛନ୍ତି । ଜଣେ ଉଚ୍ଚ ଶିକ୍ଷିତ ଓ ସଚ୍ଚୋଟ ନେତା ଭାବରେ ପ୍ରତିଷ୍ଠା ଅର୍ଜନ କରିଥିବା ଜୀବନ ଆଜି ରାଜ୍ୟ ଶିକ୍ଷାମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇଛନ୍ତି । ଆଉ ପ୍ରାଣକାନ୍ତ ବାବୁ ଅଧ୍ୟାପକରୁ ଅଧ୍ୟକ୍ଷ ପଦକୁ ପଦୋନ୍ନତି ହୋଇ ନିଜର ଔଦ୍ଧତ୍ୟ ଓ ଛାତ୍ରୀପ୍ରତି ଶୋଷଣ ଅଭିଯୋଗରେ ସସ୍ପେଣ୍ଡ ହୋଇଛନ୍ତି ।

ଏବେ ମିଛ୍ୟାରେ ପ୍ରାଣକାନ୍ତ ବାବୁ ଜ୍ୟୋତିକୁ କହିଲେ ତମ ଜୀବନ ବାବୁ ଏବେ ଶିକ୍ଷାମନ୍ତ୍ରୀ । ତମେ ଚାହିଁଲେ ମୁଁ ମୋ ପଦରେ ପୁଣି ନିଯୁକ୍ତ ହୋଇପାରନ୍ତି । କିନ୍ତୁ ଜ୍ୟୋତି କହିଲେ ଜୀବନ ଭାଇ ଏବେ ରାଜ୍ୟ ଶିକ୍ଷାମନ୍ତ୍ରୀ ସେଦିନ ମୋତେ ଅଇଁଠା ଗ୍ଲାସଟିଏ ବଢ଼ାଇ ଦେଇଥିଲେ ବୋଲି ତମେ ଟୋଇଠାମାର ତାଙ୍କୁ ରକ୍ତାକ୍ତ କରିଦେଇଥିଲ । କେଉଁ ମୁହଁରେ ମୁଁ ଯାଇ ତାଙ୍କୁ ସାକ୍ଷାତ କରିବି ? ଏକଥା ଶୁଣିବାକୁ ପ୍ରାଣକାନ୍ତ ବାବୁ ପ୍ରସ୍ତୁତ ନୁହନ୍ତି । ଯେନତେନ ପ୍ରକାରରେ ତାଙ୍କୁ ଆବେଦନ ନିବେଦନ କରି ଶିକ୍ଷାମନ୍ତ୍ରୀ ଜୀବନ ବାବୁଙ୍କୁ ଖୁସିକରି ପୁନର୍ନିଯୁକ୍ତି ଆଦେଶ ଆଣିବାକୁ ବାଧ୍ୟ କଲେ ପ୍ରାଣକାନ୍ତ ବାବୁ ।

ଜ୍ୟୋତିର ବିଶ୍ୱାସ ଜୀବନଭାଇ ସମସ୍ତ ପୂର୍ବ ଅଭିମାନକୁ ଭୁଲିଯାଇ ତାଙ୍କ ଅନୁରୋଧ ରକ୍ଷା କରିବେ । କାରଣ ଜ୍ୟୋତି ପାଇଁ ଯେ ସେ ଚିର-କୁମାର ଏକଥା ଜ୍ୟୋତି ଭଲଭାବେ ଜାଣିଥିଲେ ।

ଶିକ୍ଷାମନ୍ତ୍ରୀଙ୍କ ବାସଭବନ ଗେଟ୍‌ରେ ଜଗୁଆଳି ପାଖରେ କେଇପଦ କଥାହେଲେ ପ୍ରାଣକାନ୍ତ ବାବୁ । ଜ୍ୟୋତି ଗେଟ୍ ଭିତରଦେଇ ଗଲେ ଶିକ୍ଷା-ମନ୍ତ୍ରୀଙ୍କ ବାସଭବନକୁ । ନିଜର ନାମ ଚିଠାରେ ଲେଖିଦେଲେ "ଜ୍ୟୋତି" । ପିଅନ ନେଇ ଚିଠିଟି ଦେଇଆସିଲା । କହିଲା ସାର୍ ଜଣେ ସ୍ତ୍ରୀଲୋକ ଆପଣଙ୍କୁ ସାକ୍ଷାତପାଇଁ ଆସିଛନ୍ତି । ସଙ୍ଗେସଙ୍ଗେ ସାକ୍ଷାତପାଇଁ ମନ୍ତ୍ରୀ ଅନୁମତି ଦେଲେ ।

ମନ୍ତ୍ରୀଙ୍କ ପାଖରେ ପହଞ୍ଚି ଜ୍ୟୋତି ଛିଡ଼ାହେଲେ କିଛି କହିବାପାଇଁ, କିନ୍ତୁ ମନର କୋହକୁ ସମ୍ଭାଳି କରିପାରିଲେନି । ତଥାପି ଉଚ୍ଚକଣ୍ଠରେ କହିଲେ ଜୀବନ ଭାଇ, ତମେ ମୋ ଉପରେ ରାଗ କରିଥିବ । ଆଜି ସମୟ ଆସିଛି ତାର ପ୍ରତିଶୋଧ ନେବାପାଇଁ । ମୁଁ ତମ ନିକଟରେ ଅନ୍ୟାୟ କରିଛି ମୋର ସ୍ୱାମୀ ତୁମକୁ ଅପମାନିତ କରିଛନ୍ତି, ତୁମର ଇଜ୍ଜତ ନେଇଛନ୍ତି । ସାମାନ୍ୟ ଚାକିରି ଚାଲିଯିବା ଭୟରେ ତୁମକୁ ସନ୍ତୁଷ୍ଟ କରିବାପାଇଁ ଦୁଆର ଜଗିରହି ସେ ତୁମ ଶୟନକକ୍ଷକୁ ମୋତେ ପଠାଇଛନ୍ତି । ତୁମେ ଚାହିଁଲେ ମୋତେ ଚରିତ୍ରହୀନା କରି ମୋର ସତୀତ୍ୱ ନେଇପାର । ସତୀତ୍ୱ ବଦଳରେ

ମୋର ସ୍ୱାମୀଙ୍କ ଚାକିରି ପୁନର୍ନିଯୁକ୍ତି ଦରକାର । ଯାହା ଇଚ୍ଛା ତାହା କରପାର ।

ଆଉ କ'ଣ କହିବାକୁ ଯାଉଥିଲେ ଜ୍ୟୋତି । କଥାକୁ ଅଧାରଖି ଜୀବନ—କହିଲେ ମୁଁ ଜାଣେ ଜ୍ୟୋତି ତୁମର ଆତ୍ମାଭିମାନୀ ସ୍ୱାମୀ ତୁମକୁ ମୋ ପାଖକୁ ହିଁ ପଠାଇବେ । ମୁଁ ଚାହିଁଥିଲେ ତୁମକୁ ବଳାତ୍କାରକରି ବିବାହ କରି ପାରିଥାନ୍ତି । ତୁମକୁ ବିବାହ କରିବାର ପ୍ରତିଶ୍ରୁତି ଦେଇ ମୁଁ ମୋର ପୌରୁଷତ୍ୱକୁ ଗୋଟିଏ ଜନ୍ମପାଇଁ ବଳି ଦେଇଛି । ତୁମେ ଜାଣି ଖୁସିହେବ ଜ୍ୟୋତି ଗତକାଲି ସନ୍ଧ୍ୟାରେ ତୁମ ସ୍ୱାମୀଙ୍କ ପୁନର୍ନିଯୁକ୍ତି ପାଇଁ ମୁଁ ଫାଇ-ଲରେ ଦସ୍ତଖତ କରି ଅର୍ଡ଼ର ଦେଇଛି ।

ଏକଥା ମନେରଖ ଜ୍ୟୋତି, ତମେ ଅଧକ୍ଷ ପ୍ରାଣକାନ୍ତ ବାବୁଙ୍କ ପ୍ରାଣପ୍ରିୟା ହୋଇପାର କିନ୍ତୁ ମୋ ଜୀବନର ପ୍ରେମିକା । କ୍ଷମତାରେ ଅନ୍ଧ-ହୋଇ ତୁମକୁ ମୁଁ ଅପବିତ୍ର କରିବାକୁ ଚାହେଁନାହିଁ । ତୁମେ ମୋର ଏତିକିହିଁ ଯଥେଷ୍ଟ । ସାମାନ୍ୟ କ୍ଷମତାର ଦାହି ଦେଇ ପ୍ରୀତିର ଫସଲକୁ ମୁଁ ଉଜାଡ଼ି ଦେବାକୁ ଚାହେଁନା ।

ଜୀବନର ପାଦତଳେ ପଡ଼ିଯାଇ ଜ୍ୟୋତି କେବଳ କ୍ଷମା ଚାହୁଁଥିଲା, ତା ଆଖିରୁ ଶ୍ରାବଣୀ ଝରୁଥିଲା । ସତେଯେମିତି ସଂସାରର ସବୁ ଦୁଃଖ, ସବୁ କ୍ଷୋଭ ଓ ସବୁ ଅନୁଶୋଚନାକୁ ସେଇ ଆଖିର ଲୁହରେ ଧୋଇଦେବାକୁ ବ୍ୟର୍ଥ ଉଦ୍ୟମ କରୁଥିଲା ଜ୍ୟୋତି ।



